# ଜାତକ କଥା

( ଚତୁର୍ଥ ଭାଗ )

ଭାଷାନ୍ତର :

ଶ୍ରୀ ଭଗୀରଥି ନେପାକ

ପ୍ରକାଶକ

ଜେ. ମହାପାତ୍ର ଏଣ୍ଡ କୋ.

ଛାତ୍ରସାଥୀ ଅଫିସ

ନିମଚଉଡି, କଟକ-୨

ମୂଲ୍ୟ ଟ ୬-୦୦

# ଏଥିରେ ଅଛି








ଏକଦା ବିଦେହ ରାଜ୍ୟର ରାଜଧାନୀ ମିଥିଳାରେ ମଖାଦେବ ନାମରେ ଜଣେ ନ୍ୟାୟ ଓ ଧର୍ମପରାୟଣ ରାଜା ରାଜୁତି କରୁଥିଲେ ପ୍ରଥମେ ସେ ଯୁବରାଜ, ତତ୍ପରେ ରାଜପ୍ରତିନିଧି ଏବଂ ପରିଶେଷରେ ରାଜ୍ୟର ରାଜା ହିସାବରେ ବହୁକାଳ ଧରି ପ୍ରଜାବର୍ଗଙ୍କୁ ସୁଖ ଓ ଶାନ୍ତିରେ ଚଳାଇ ଆସିଲେ । ତାଙ୍କ ରାଜୁତି କାଳରେ ସେ ଉଚିତ ରାଜଧର୍ମ ପାଳନ ପୂର୍ବକ ପ୍ରଜା ଗଣଙ୍କର ସୁଖ ଓ ସନ୍ତୋଷ ବିଧାନ କରିପାରିଥିଲେ ।

ଏହିପରି ବହୁବର୍ଷ ଧରି ସୁଖ ଶାନ୍ତିରେ ବାସକରିବା ପରେ ଦିନେ ତାଙ୍କ କ୍ଷୌର କାର୍ଯ୍ୟରେ ନିଯୁକ୍ତ ଥିବା ନାପିତକୁ କହିଲେ, "ତୁମେ ମୋର ମସ୍ତକରେ ଯଦି କେବେ ଶୁକ୍ଳକେଶ ଦେଖ, ମୋତେ ଜଣାଇବ ।"

ନାପିତ ସେ କଥା ମନେ ରଖିଥିଲା । ବହୁବର୍ଷ ପରେ ଦିନେ ନାପିତ ତାଙ୍କ ମସ୍ତକରେ ଗୋଟିଏ ଶୁକ୍ଳକେଶର ସନ୍ଧାନ ପାଇ ରାଜାଙ୍କୁ ଜଣାଇଲା ।

ରାଜା ଏହାଶୁଣି ସେହି ଶୁକ୍ଳକେଶ ଉପୁଡାଇ ତାଙ୍କ ହସ୍ତ ପାପୁଲିରେ ଦେବାକୁ ଆଦେଶ କଲେ ।

ନାପିତ ସଙ୍ଗେ ସଙ୍ଗେ ସେ ଆଦେଶ ପାଳନ କଲା ।

ସେତେବେଳେ ରାଜାଙ୍କର ଆହୁରି ବହୁ ବର୍ଷର ପରମାୟୁ ଥିଲା ; କିନ୍ତୁ ହସ୍ତ ପାପୁଲିର ସେହି ଶୁକ୍ଳ ବର୍ଣ୍ଣର କେଶ ତାଙ୍କୁ ବ୍ୟସ୍ତ ବିବ୍ରତ କରି ପକାଇଲା । ସେ ମହା ସଙ୍କଟରେ ପଡିଗଲେ ।

ତାଙ୍କର ମନେହେଲା, ଯେପରିକି ମୃତ୍ୟୁ ଦେବତା ତାଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ ତାଙ୍କୁ ଆହ୍ୱାନ ଜଣାଉଛନ୍ତି । ସେ ମନକୁ ମନ କହିହେଲେ, "ନିର୍ବୋଧ ମଖାଦେବ; ତୋ, ମସ୍ତକରେ ଶୁକ୍ଳକେଶ ଦେଖା ଦେଲାଣି, ତଥାପି ତୁ ତୋର ଦୁର୍ବଳତା ପରିତ୍ୟାଗ କରି ପାରିନାହୁଁ ? ତୁ ଆଉ ସତପଥକୁ କେବେ ଆସିବୁ ?" ଶୁକ୍ଳକେଶ ଓ ମୃତ୍ୟୁ ଚିନ୍ତା କରୁ କରୁ ତାଙ୍କ ଶରୀର ଘର୍ମାକ୍ତ ହୋଇଉଠିଲା । ସେ ତାଙ୍କ ଶରୀରର ରାଜ ପୋଷାକକୁ ଦେଖି ବିରକ୍ତି ପ୍ରକାଶ କଲେ । ସମଗ୍ର ପରିବେଶ ତାଙ୍କ ପକ୍ଷରେ ଅସହ୍ୟ ବୋଧହେଲା । ସେ ମନେ ମନେ ସ୍ଥିର କରିନେଲେ, "ଆଜିଠୁ ସଂସାର ତ୍ୟାଗୀ ହେବି ।"

ଏହି ଅବସରରେ ସେ ତାଙ୍କ ନାପିତକୁ ଗୋଟିଏ ମୂଲ୍ୟବାନ ଗ୍ରାମ ପ୍ରଦାନ କଲେ । ତତ୍‌ପରେ ତାଙ୍କ ଜ୍ୟେଷ୍ଠ ପୁତ୍ରକୁ ଡକାଇ କହିଲେ,"'ମୋ' ମସ୍ତକରେ ଶୁକ୍ଳକେଶ ଦେଖା ଦେଉଛି । ମୋତେ ଏବେ ବାର୍ଦ୍ଧକ୍ୟ ଆକ୍ରମଣ କଲା । ବହୁକାଳ ଧରି ମୁଁ ସାଂସାରିକ ସୁଖଭୋଗ କଲି । ବର୍ତ୍ତମାନ ମୁଁ ନୈସର୍ଗିକ ଆନନ୍ଦ ଆସ୍ୱାଦନ କରିବାକୁ ଚାହୁଁଛି । ମୁଁ ବର୍ତ୍ତମାନ ସଂସାର ତ୍ୟାଗ କରି ସନ୍ନ୍ୟାସ ବ୍ରତ ଗ୍ରହଣ କରିବି । ତୁମେ ଏ ରାଜ୍ୟ-ଭାର ଗ୍ରହଣ କର । ମୁଁ ନଗର ପ୍ରାନ୍ତରେ ଥିବା ଆମ୍ର କାନନରେ ରହି ସନ୍ନ୍ୟାସ ଜୀବନ-ଯାପନ କରିବାକୁ ବାହାରିଲି ।

ମଖାଦେବ ରାଜ୍ୟଭାର ତ୍ୟାଗକରି ସନ୍ନ୍ୟାସୀ ହୋଇ ଯାଉଥିବା ସମ୍ବାଦ ବିଜୁଳି ବେଗରେ ସର୍ବତ୍ର ପ୍ରଚାରିତ ହୋଇଗଲା । ପାରିଷଦବର୍ଗ ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ରାଜ୍ୟ ତ୍ୟାଗର କାରଣ ପଚାରିଲେ ।

ରାଜା ମସ୍ତକର ସେହି ଶୁକ୍ଳକେଶଟିକୁ ଦେଖାଇ କହିଲେ, ମୋର ମସ୍ତକର ଶୁଭ୍ରକେଶ ମୃତ୍ୟୁ ଦେବତାର ଦୂତ ଅଟେ । "ମୋର ମୃତ୍ୟୁ ଦିନ ଆସିଗଲା । ତେଣୁ ରାଜଭୋଗରେ ଲିପ୍ତ ନ ରହି ସଂସାର ତ୍ୟାଗ ପୂର୍ବକ ସନ୍ନ୍ୟାସ ବ୍ରତ ଧାରଣ କରିବା ବିଧେୟ ।"

ଏହା କହି ସାରିବା ପରେ ସେହିଦିନ ସେ ରାଜପ୍ରାସାଦ ଓ ରାଜପରିଚ୍ଛଦ ପରିତ୍ୟାଗ କରି ସନ୍ନ୍ୟାସୀ ହୋଇଗଲେ । ଆମ୍ର କାନନରେ ତପ ସାଧନ ଓ ବ୍ରତ ଧାରଣ କରି ବହୁବର୍ଷ ବିତାଇ ଦେବାପରେ, ଶାନ୍ତି ଓ ଆନନ୍ଦରେ ଶେଷ ନିଃଶ୍ୱାସ ତ୍ୟାଗ କରି ବ୍ରହ୍ମଲୋକରେ ସ୍ଥାନ ପାଇଲେ ।

(ମଖାଦେବ ଜାତକ)






ବହୁକାଳ ପୂର୍ବେ ବାରଣସୀରେ ରାଜା ବ୍ରହ୍ମଦତ୍ତ ରାଜୁତି କରୁଥିଲେ । ସେହି ରାଜ୍ୟରେ ଜଣେ ଜ୍ଞାନୀ ବ୍ରାହ୍ମଣ ବାସ-କରୁଥିଲେ । ସେ ବେଦ ଶାସ୍ତ୍ରରେ ଖୁବ୍ ପାରଙ୍ଗମ ଥିଲେ । ତାଙ୍କ ପାଖରେ ବହୁତ ଛାତ୍ର ଅଧ୍ୟୟନ କରୁଥିଲେ । ହୋମ, ଯଜ୍ଞ ଓ ପୂଜାପାଠ ଇତ୍ୟାଦିରେ ତାଙ୍କର ବହୁ ସମୟ ଅତିବାହିତ ହେଉଥିଲା ।

ଦିନେ ସେ ଗୋଟିଏ ଯଜ୍ଞ କରିବା ପାଇଁ ଛେଳିଟିଏ ନେଇ ଆସିଲେ ଓ ଶିଷ୍ୟମାନଙ୍କୁ କହିଲେ ଏହାକୁ ନେଇ ପବିତ୍ର ଗଙ୍ଗା ନଦୀରେ ସ୍ନାନ କରାଇଆଣ । ଏହା ବେକରେ ଫୁଲମାଳ ପିନ୍ଧାଇ ଦିଅ ଓ ମୁଣ୍ଡରେ ସିନ୍ଦୁର ଲଗାଇ ଦିଅ । ଏହାକୁ ବଳି ଦିଆଯିବ ।

ଶିଷ୍ୟମାନେ ଗୁରୁଙ୍କ କଥା ଅନୁସାରେ ଛେଳିକୁ ନେଇ ଗଙ୍ଗା ନଦୀରେ ସ୍ନାନ କରାଇଲେ ଓ ଗୁରୁଙ୍କ କଥା ମୁତାବକ ତା' ବେକରେ ଫୁଲମାଳ ଓ ମୁଣ୍ଡରେ ସିନ୍ଦୁର ଲଗାଇ ନଈ କୂଳରେ ଛିଡା କରାଇଲେ ।

ଛେଳିଟି ଗୋଟିଏ ସାମାନ୍ୟ ଛେଳି ନ ଥିଲା । ସେ ତାର ପୂର୍ବ ଜନ୍ମର କଥା ସବୁ ସ୍ମରଣ କରି ପାରୁଥିଲା । ସେ ନଈ କୂଳରେ ଠିଆ ହୋଇଥିବା ବେଳେ ହଠାତ୍ ଠୋ-ଠୋ କରି ହସି ପକାଇଲା । ତା'ପରେ କଅଣ ଭାବିଲା କେଜାଣି ପୁଣି ବିକଳରେ କାନ୍ଦିବାକୁ ଲାଗିଲା ।

ଏହା ଦେଖି ଶିଷ୍ୟମାନେ ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ଛେଳିକୁ ପଚାରିଲେ, ତୁ ବର୍ତ୍ତମାନ ଖୁବ୍ ଜୋରରେ ହସୁଥିଲୁ, ପୁଣି କାନ୍ଦିଲୁ କାହିଁକି ?

ଛେଳିଟି କହିଲା—ସେ ତ ବହୁତ କଥା । ଏଠାରେ କ'ଣ କହିବି, ଚାଲ ତୁମ ଗୁରୁଙ୍କ ପାଖକୁ । ତାଙ୍କରି ଆଗରେ ମୁଁ ସବୁକଥା କହିବି ।

ଏହା ଶୁଣି ଶିଷ୍ୟମାନେ ଛେଳିକୁ ନେଇ ତାଙ୍କ ଗୁରୁଙ୍କ ନିକଟରେ ପହଞ୍ଚିଲେ ଏବଂ ଘଟଣା ଘଟଣା ବର୍ଣ୍ଣନା କଲେ । ସବୁ ଶୁଣି ବ୍ରାହ୍ମଣ ଛେଳିକୁ ହସିବାର ଓ କାନ୍ଦିବାର କାରଣ ପଚାରିଲେ ।

ଛେଳିଟି ତା'ର ପୂର୍ବ ଜନ୍ମର ସବୁଘଟଣା ମନେପକାଇ କହିଲା—ପୂର୍ବ ଜନ୍ମରେ ମୁଁ ମଧ୍ୟ ଜଣେ ବେଦଜ୍ଞ ବ୍ରାହ୍ମଣ ରୂପେ ଜନ୍ମ ହୋଇଥିଲି । ତୁମପରି ଗୋଟିଏ ଯଜ୍ଞ କରିବା ପାଇଁ ମୁଁ ଗୋଟିଏ ଛେଳି ଆଣି ତାକୁ ବଧ କରିଥିଲି । ସେଥିପାଇଁ ମୋ କପାଳରେ ଲେଖିହୋଇଗଲା ଯେ, ମୁଁ ପାଞ୍ଚଶହ ଥର ଛେଳି ରୂପରେ ଜନ୍ମ ହେବି ଏବଂ ପାଞ୍ଚଶହ ଥର ମୋର ମୁଣ୍ଡ କାଟ ଯିବ । ଏହା ପୂର୍ବରୁ ଚାରିଶହ ଅନେଶତ ଥର ମୋର ମୁଣ୍ଡ କଟା ସରିଛି । ଆଜି ତୁମରି ହାତରେ ପାଞ୍ଚଶହ ଥର ପୂର୍ଣ୍ଣ ହେବ । ମୁଁ ଏ ଜନ୍ମରୁ ଉଦ୍ଧାର ପାଇବି । ଏଥିପାଇଁ ମୁଁ ଖୁସିରେ ହସୁଥିଲି ; କିନ୍ତୁ ପରେ ପରେ ତୁମ କଥା ଚିନ୍ତାକରି ମୋର ଦୁଃଖ ହେଲା । ମୁଁ ଗୋଟିଏ ଥର ଯଜ୍ଞ ପାଇଁ ଗୋଟିଏ ଛେଳିର ମୁଣ୍ଡ ହାଣିଥିବାରୁ ମୋତେ ପାଞ୍ଚଶହ ଥର ମୁଣ୍ଡ ହରାଇବାକୁ ପଡ଼ିଥିଲା । ବର୍ତ୍ତମାନ ତୁମେ ମୋର ମସ୍ତକ ଛେଦନ କରିବାକୁ ଯାଉଛ । ତେଣୁ ତୁମକୁ ମଧ୍ୟ ମୋରି ପରି ପାଞ୍ଚଶହ ଥର ପୁନର୍ଜନ୍ମ ଗ୍ରହଣ କରିବାକୁ ପଡ଼ିବ ଓ ପାଞ୍ଚଶହ ଥର ତୁମର ମସ୍ତକ ଛେଦନ ହେବ । ତୁମର ଏ ଶୋଚନୀୟ କଥା ଭାବି ମୋତେ କାନ୍ଦମାଡ଼ିଲା ।

ଏହା ଶୁଣି ବ୍ରାହ୍ମଣଙ୍କର ଆଖି ଖୋଲିଗଲା । ସେ ଚିନ୍ତିତ ହୋଇ ପଡ଼ିଲେ । ସେ ଛେଳିକୁ କହିଲେ—ତୁମେ ଭୟ କରନାହିଁ । ମୁଁ ତୁମକୁ ହତ୍ୟା କରିବି ନାହିଁ । ତୁମେ ନିଜବାଟରେ ଚାଲିଯାଅ ।

ଛେଳିଟି କହିଲା—ଏ କ'ଣ କହୁଛ ବ୍ରାହ୍ମଣ ? ତୁମେ ମୋତେ ହତ୍ୟା କର କି ନାହିଁ, ଆଜି କିନ୍ତୁ ମୋର ହତ୍ୟା ଯୋଗ ଅଛି ।

ବ୍ରାହ୍ମଣ ପ୍ରତିଶ୍ରୁତି ଦେଲେ, ତୁମକୁ ଆଜି ମୁଁ ଜଗି ରହିବି । ତୁମର କୌଣସି ଅନିଷ୍ଟ ହେବ ନାହିଁ ।

ଛେଳି କହିଲା—ତୁମେ ଯେତେ ଜଗି ରହିଲେ ମଧ୍ୟ, ମୋତେ ରକ୍ଷାକରି ପାରିବ ନାହିଁ । କାରଣ ପୂର୍ବ ଜନ୍ମର ପାପର ପରିଣାମ ଆଜି ଅବଶ୍ୟ ଭୋଗ କରିବାକୁ ପଡ଼ିବ । କୌଣସି ଶକ୍ତି ମୋତେ ତହିଁରୁ ରକ୍ଷା କରି ପାରିବ ନାହିଁ ।

ବ୍ରାହ୍ମଣ ସେହି ଛେଳିକୁ ଛାଡ଼ିଦେଇ ଶିଷ୍ୟମାନଙ୍କୁ କହିଲେ—ଦେଖ, ଏ ଛେଳିଟିକୁ ଯେମିତି କେହିହେଲେ ମାରି ନ ପକାଏ । ସେ ନିଜେ ମଧ୍ୟ ଛେଳି ଉପରେ ସତର୍କ ଦୃଷ୍ଟି ରଖିଲେ ।

ଛେଳିଟି ଦଉଡ଼ିରୁ ଫିଟିଯିବା ସଙ୍ଗେ ସଙ୍ଗେ ଗୋଟିଏ ପାହାଡ଼ ଉପରକୁ ଚଢ଼ିଗଲା ଏବଂ ସେଠାରେ ଥିବା ଗୋଟିଏ କଅଁଳିଆ ଗଛରୁ ପତ୍ର ଖାଇବା ଆଶାରେ ବେକ ଲମ୍ବାଇଲା । ଠିକ୍ ଏତିକିବେଳେ ଆକାଶରୁ ବଜ୍ରପାତ ହେଲା । ବଜ୍ରପାତ ଫଳରେ ମୁଣ୍ଡିଆର ଚଟାଣ ଫାଟିଗଲା ଓ ଛେଳିର ମୁଣ୍ଡ ଜଳିଗଲା ।

ଏହାପରେ ଲୋକମାନେ ସେଠାରେ ଜମାହୋଇ ଦେଖିଲେ, ଛେଳିଟିର ଜୀବନ ଶେଷ ହୋଇ ଯାଇଛି ।

(ମତକଭତ୍ତ ଜାତକ)






ରାଜା ବ୍ରହ୍ମଦତ୍ତ ବାରାଣସୀରେ ରାଜୁତି କଲାବେଳେ, ବୋଧିସତ୍ତ୍ୱ ହିମାଳୟର ପାଦଦେଶରେ ମାଙ୍କଡ଼ ଜନ୍ମ ପାଇ ବାସ କରୁଥିଲେ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ସେ ହୃଷ୍ଟପୁଷ୍ଟ ଓ ବଳିଷ୍ଠ ହେଲେ । ଗଙ୍ଗାନଦୀର ତୀରବର୍ତ୍ତୀ ବଣର ଏକ ବୃହତ୍ ବୃକ୍ଷର କୋରଡ଼ ତାଙ୍କର ବାସସ୍ଥାନ ଥିଲା ।

ସେତେବେଳେ ଗଙ୍ଗା ନଦୀରେ ଗୋଟିଏ କୁମ୍ଭୀର ତାର ପତ୍ନୀ ସଙ୍ଗରେ ରହୁଥିଲା । କୁମ୍ଭୀର ପତ୍ନୀ ହୃଷ୍ଟପୁଷ୍ଟ ମାଙ୍କଡ଼ର କଲିଜା ଖାଇବାକୁ ଇଚ୍ଛାକରି ତାର ସ୍ୱାମୀକୁ କହିଲା, ପ୍ରିୟତମ ! ଏହି ହୃଷ୍ଟପୁଷ୍ଟ ମାଙ୍କଡ଼ର କଲିଜା ମୋତେ ଚଖାଅ ନାହିଁ ?

କୁମ୍ଭୀର ଏହା ଶୁଣି ଉତ୍ତର ଦେଲା—ପ୍ରିୟେ ! ତୁମେ ତ ଜାଣ, ଆମେ ଜଳଚର ପ୍ରାଣୀ । ମାଙ୍କଡ଼ ହେଉଛି ସ୍ଥଳଚର । ତାକୁ ମୁଁ ଧରି ପାରିବି କେମିତି ?

କୁମ୍ଭୀର ପତ୍ନୀ ଅନୁନୟ କରି କହିଲା—ଯେ କୌଣସି ଉପାୟରେ ତୁମେ ତାକୁ ଧରିବାକୁ ପଡ଼ିବ । ତାର କଲିଜା ନ ପାଇଲେ ମୁଁ ପ୍ରାଣ ହାରିଦେବି ।

କୁମ୍ଭୀର ଏହାଶୁଣି ପତ୍ନୀକୁ ସାନ୍ତ୍ୱନା ଦେଇ କହିଲା—ଅସ୍ଥିର ହୁଅନାହିଁ । ମୁଁ ଗୋଟିଏ ଉପାୟ ଚିନ୍ତା କରୁଛି । ଦିନେ ତାର କଲିଜା ତୁମକୁ ଖାଇବାକୁ ଦେବି ।

ଦିନେ ବୋଧିସତ୍ତ୍ୱରୂପୀ ମାଙ୍କଡ଼ ଗଙ୍ଗାଜଳ ପାନ କରି ଗଙ୍ଗା ତୀରରେ ବସିଛନ୍ତି, କୁମ୍ଭୀର ତାର ନିକଟକୁ ଯାଇ କହିଲା—ମହାଶୟ ! ଆପଣ ଏ ତୀରରେ ଅନେକ ଦିନ ରହିବାର

ଦେଖୁଛି । ଏ ତୀରର ଫଳଗୁଡ଼ିକ ସୁସ୍ୱାଦୁ ନୁହେଁ । ନଦୀର ସେ ତୀରରେ ବଣ ଅଛି ଓ ସେଇଠି ଅନେକ ଆମ୍ବ ଓ ଜାମୁ କୋଳି ବୃକ୍ଷ ରହିଛି ! ତାର ଫଳଗୁଡ଼ିକ ମହୁପରି ମିଠା । ଆପଣ ନଦୀ ପାରି ହୋଇ, ସେ ତୀରକୁ ଯାଇ ସେହି ସୁସ୍ୱାଦୁ ଫଳସବୁ ଖାଇ ନାହାନ୍ତି କାହିଁକି ?

କିନ୍ତୁ କୁମ୍ଭୀର ମହାଶୟ; ତୁମେ ତ ଜାଣ ଯେ,ମୁଁ ଏକ ସ୍ଥଳଚର ପ୍ରାଣୀ । ଗଙ୍ଗାନଦୀର ଧାର ସୁଗଭୀର ଓ ସୁପ୍ରଶସ୍ତ । ମୁଁ ଏହା ଅତିକ୍ରମ କରି ସେଠାକୁ ଯାଇ ପାରିବି କେମିତି ? ମାଙ୍କଡ ପ୍ରଶ୍ନ କଲା ।

କୁମ୍ଭୀର ଏହା ଶୁଣି ସଙ୍ଗେ ସଙ୍ଗେ ଉତ୍ତର ଦେଲା—କାହିଁକି ? ତୁମେ ଯଦି ଯିବାକୁ ଇଚ୍ଛା କର, ମୋରି ପିଠିରେ ବସାଇ ନେଇଯିବି ।

ବୋଧିସତ୍ତ୍ୱ କୁମ୍ଭୀର କଥାରେ ବିଶ୍ୱାସ କଲେ ଓ ତାର ପିଠିରେ ବସି ଆର ପାରିକୁ ଯିବାକୁ ସମ୍ମତି ପ୍ରଦାନ କଲେ ।

କୁମ୍ଭୀର ବୋଧିସତ୍ତ୍ୱଙ୍କୁ ପିଠିରେ ବସାଇ ଗଙ୍ଗାନଦୀରେ ସନ୍ତରଣ କରିବାକୁ ଲାଗିଲା । କିନ୍ତୁ ତୀର ଛାଡ଼ି ଅଳ୍ପ କିଛିଦୂର ଯିବାପରେ ସେ ହଠାତ୍ ଗଭୀର ଜଳ ଭିତରେ ବୁଡ଼ି ଗଲା ।

ବୋଧିସତ୍ତ୍ୱ ଗଙ୍ଗାନଦୀର ଅତଳ ଜଳରେ ବୁଡ଼ି ଯାଉ ଯାଉ କାତର କଣ୍ଠରେ କହିଲେ—ବନ୍ଧୁ ! ଏ କଅଣ କରୁଛ ? ମୁଁ ଯେ ବୁଡ଼ି ଯାଉଛି । ତୁମର ଉଦ୍ଦେଶ୍ୟ କଅଣ ?

କୁମ୍ଭୀର ଉତ୍ତର ଦେବା ଛଳରେ ପ୍ରକାଶ କଲା—ନିର୍ବୋଧ ! ତୁ କଅଣ ଭାବିଥିଲୁ ଯେ, ତୋରି ଉପକାର ପାଇଁ ମୁଁ ତୋତେ ପିଠିରେ ପିଠେଇ ଆରପାରିକୁ ନେଉଛି ? ନା, ନା; ସେ କଥା ମୋଟେ ନୁହେଁ । ଅସଲ କଥା ହେଲା, ମୋର ସ୍ତ୍ରୀ ତୋର କଲିଜା ଖାଇବାକୁ ଚାହେଁ । ତୋତେ ମାରି ତୋ' ଛାତିର କଲିଜା ମୋ' ସ୍ତ୍ରୀକୁ ଖୁଆଇବି ।

ବୋଧିସତ୍ତ୍ୱ ଅଧୀର ନ ହୋଇ କହିଲେ, ବନ୍ଧୁ ! ଯାହାହେଉ ଏଇଠି ଅସଲ ଉଦ୍ଦେଶ୍ୟ ପ୍ରକାଶ କରି ଭଲ କାମଟିଏ କଲ । କିନ୍ତୁ ତୁମେ ଜାଣ, ଆମେ ଗଛ ଉପରେ ଏ ଡାଳରୁ ସେ ଡାଳକୁ ଡିଆଁ ଡେଇଁ କରୁ । କଲିଜାକୁ ଛାତିରେ ରଖି ଏପରି ଡେଇଁଲେ ସେଇଟା କଅଣ ଛେଚି କଚୁଡ଼ି ହୋଇ ଚିକି ଚିକି ହୋଇ ଯିବନାହିଁ ?

କୁମ୍ଭୀର ସନ୍ଦିଗ୍ଧ ଗଳାରେ ପ୍ରଶ୍ନକଲା, ତେବେ ତୁମେ ତାକୁ ରଖ କେଉଁଠି ?

ବୋଧିସତ୍ତ୍ୱ ଏହାଶୁଣି ଗଙ୍ଗା କୂଳରେ ଥିବା ଗୋଟିଏ ଝଙ୍କା ବରଗଛକୁ ଦେଖାଇ ଦେଇ କହିଲେ—ହେଇ, ସେଇ ବୃକ୍ଷ କୋଟରରେ ରଖି ଆସିଛି ।

କୁମ୍ଭୀର ଏହାଶୁଣି କହିଲା, ସତ୍ୟରେ ତୁମକୁ ନୁହେଁ, ତୁମର କଳିଜା ମୋର ଆବଶ୍ୟକ । ଯଦି ସେ କଳିଜାଟି ଆଣି ମୋ' ହାତରେ ଦିଅ ତାହାହେଲେ ତୁମକୁ ମାରିବି ନାହିଁ ।

ବୋଧିସତ୍ତ୍ୱ କହିଲେ—ମୋତେ କୂଳକୁ ନେଇ ଚାଲ । ମୁଁ ତୁମ ହାତରେ କଳିଜା ଦେବି ।

କୁମ୍ଭୀର ଏହାଶୁଣି ବୋଧିସତ୍ତ୍ୱଙ୍କୁ ପିଠିରେ ବସାଇ ଗଙ୍ଗାକୂଳରେ ଛାଡିଦେଲା । ଗଙ୍ଗା କୂଳରେ ପହଞ୍ଚିବା ମାତ୍ରେ, ବୋଧିସତ୍ତ୍ୱ ଗଛ ଉପରେ ଡିଆଁ ମାରି ଚଢିଗଲେ । ତାରି ଉପରେ ବସି କହିଲେ—ଦୁଷ୍ଟ କୁମ୍ଭୀର । ତୋର ଧାରଣା ଥିଲା ଯେ, ପ୍ରାଣୀମାନେ ସେମାନଙ୍କ କଳିଜାକୁ ଗଛ ଶିଖରରେ ରଖିଥାନ୍ତି । ତୁ ଏତେ ନିର୍ବୋଧ ? ମୋତେ ଆଉ ପାରିର ଫଳ ଖୁଆଇବାକୁ ଲୋଭ ଦେଖାଇ ମୋର ସର୍ବନାଶ କରିବାକୁ ଚାହୁଁଥିଲୁ ନା ? ସେ ଫଳ ମୋର ଦରକାର ନାହିଁ । ଏଥର ବୁଝିଲୁ ତ ? ମୁଁ ଆଉ ଫେରୁ ନାହିଁ । ତୁ ଫେରିଯା' । ଦେହ ମୋଟାହେଲେ କଅଣ ହେବ, ବୁଦ୍ଧି ନାହିଁ ।

କୁମ୍ଭୀର ଏହାଶୁଣି ହତାଶ ଓ ନିରାଶ ହୋଇ ନିଜ ବାସସ୍ଥାନକୁ ବାହୁଡି ଗଲା ।

(ସୁଂସୁମାର ଜାତକ)



# ଅସନ୍ତୁଷ୍ଟ ବଳଦ



ଏକଦା ବ୍ରହ୍ମଦତ୍ତ ବାରାଣସୀରେ ରାଜତ୍ୱ କଲାବେଳେ, ବୋଧିସତ୍ତ୍ୱ ବଳଦ ରୂପରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ନାମ ଥିଲା ମହାଲୋହିତ । ଚୁଲ୍ଲଲୋହିତ ନାମରେ ତାଙ୍କର ଏକ ଭାଇ ଥିଲା । ସେ ଦୁହେଁ ମିଶି କୃଷକର ଜମି ଚଷ କରିବା, ଶଗଡ଼ ଟାଣିବା ପ୍ରଭୃତି ଯାବତୀୟ କଠିନ କାର୍ଯ୍ୟ ତୁଲାଉଥିଲେ ।

ଦୁଇଟି ବଳଦ ବ୍ୟତୀତ କୃଷକ ଆଉ ଏକ ମେଷ ମଧ୍ୟ ପାଳନ କରିଥିଲା । ସେହି ମେଷର ନାମ ମୁନିକ କୃଷକ ଓ କୃଷକ ପତ୍ନୀ ମୁନିକକୁ ଅନ୍ନ, ବୃକ୍ଷର କୋମଳ ପତ୍ର ଓ ତୃଣ ଇତ୍ୟାଦି ସଂଗ୍ରହ କରି ଖାଇବାକୁ ଦେଉଥିଲେ ଓ ବହୁ ଯତ୍ନସହକାରେ ତାର ଲାଳନପାଳନ କରୁଥିଲେ । ମୁନିକ ସୁନ୍ଦର ଖାଦ୍ୟ ଓ ଯତ୍ନ ଲାଭ କରି ଦିନକୁ ଦିନ ହୃଷ୍ଟପୁଷ୍ଟ ଦେଖା ଯାଉଥିଲା ।

ଏହା ଦେଖି ଚୁଲ୍ଲଲୋହିତ ଦିନେ ମହାଲୋହିତ ଉଦ୍ଦେଶ୍ୟରେ କହିଲା—ଭାଇ, ଆମର ପ୍ରଭୁ ଓ ପ୍ରଭୁ ପତ୍ନୀଙ୍କ ଅନ୍ୟାୟ ବ୍ୟବହାର ଦେଖୁଛ ତ ? ଆମେ ଦୁହେଁ ମିଶି ତାଙ୍କର ଜମି ଚଷ ଶଗଡ ବୁହା ଇତ୍ୟାଦି ସବୁ କାମ କରୁଛେ ; ଅଥଚ ଆମକୁ କେବେହେଲେ ଭଲ ଖାଦ୍ୟ ମିଳୁନାହିଁ । ଆମ ପାଇଁ କେବଳ ଶୁଖିଲା ନଡା ଓ ଘାସର ବ୍ୟବସ୍ଥା ହୋଇଛି । ଅଥଚ ସେହି ମେଷଟି କିଛି ନ କରି ମଧ୍ୟ ସମସ୍ତଙ୍କର ଆଦରର ପାତ୍ର ହୋଇଛି । ତା' ପାଇଁ ସବୁ ଭଲ ଖାଦ୍ୟର ବ୍ୟବସ୍ଥା ହୋଇଛି । ଏହାର କାରଣ କଅଣ ? ଏପରି ପକ୍ଷପାତ ନୀତି ମୋ' ପକ୍ଷରେ ଅସହ୍ୟ ।

ଏହା ଶୁଣି ବୋଧିସତ୍ତ୍ୱ କହିଲେ—ଆମକୁ ଶୁଖିଲା ନଡା ଓ ମେଷକୁ ଭଲ ଖାଦ୍ୟ ମିଳୁଛି ବୋଲି ହିଂସାପରାୟଣ ହେବା ଉଚିତ ନୁହେଁ । ଏଥିପାଇଁ ମୁନିବ ଓ ମୁନିବ ପତ୍ନୀଙ୍କୁ ମଧ୍ୟ ଦୋଷଦେବା ଅସଙ୍ଗତ । କାରଣ, ଆଉ କିଛିଦିନ ପରେ ଆମ ପ୍ରଭୁଙ୍କର କନ୍ୟାର ବିବାହ ହେବ । ବିବାହ ଉତ୍ସବରେ ବହୁ

ଅତିଥି ଆସିବେ । ସେମାନଙ୍କୁ ଆପ୍ୟାୟିତ କରିବା ସକାଶେ ମେଷ ମାଂସ ଦରକାର ହେବ । ତେଣୁ ତାକୁ ଖୁଆଇ ପିଆଇ ହୃଷ୍ଟପୁଷ୍ଟ କରାଯାଉଛି । ବୁଝିବାକୁ ହେବ, ସେ ମରଣ ଖାଦ୍ୟ ହିଁ ଖାଉଛି ।

କିଛିଦିନ ପରେ କୃଷକ କନ୍ୟାର ବିବାହ ଦିନ ଆସିଲା । ଅନେକ ବନ୍ଧୁବାନ୍ଧବ ଆସି କୃଷକ ଗୃହରେ ଉପସ୍ଥିତ ହେଲେ । ସେହିଦିନ ମୁନିକକୁ ହତ୍ୟା କରାଗଲା ଓ ତାରି ମାଂସରେ ଭୋଜନର ବ୍ୟବସ୍ଥା କରାଗଲା ।

ମହାଲୋହିତ ଚୁଲ୍ଲଲୋହିତକୁ କହିଲେ—ଏବେ ଦେଖିଲୁ ତ ? ମୁନିକର ଦଶା କଅଣ ହେଲା ? ମୁଁ କଅଣ କହୁଥିଲି ?

ଚୁଲ୍ଲଲୋହିତ ସବୁକଥା ବୁଝି ଯାଇଥିଲା । କହିଲା—ତୁମେ ଠିକ୍ କହୁଥିଲ ଭାଇ । ଭଲ ଖାଦ୍ୟ ଖାଇ ମୃତ୍ୟୁର ଶିକାର ହେବା ଅପେକ୍ଷା ଯତ୍‌କିଞ୍ଚିତ ଖାଇ ଜୀବନଧାରଣ କରିବା ସହସ୍ର ଗୁଣରେ ଶ୍ରେୟସ୍କର । ଅପରକୁ ଈର୍ଷା ନ କରି ନିଜ ମାର୍ଗରେ ଚାଲିବା ବୁଦ୍ଧିମାନର ଲକ୍ଷଣ ।

(ମୁନିକ ଜାତକ)






ଏକଦା ଏକ ନିଘଞ୍ଚ ଅରଣ୍ୟ ଭିତରେ ଗୋଟିଏ ଜଳାଶୟ ଥିଲା । ଏହି ଜଳାଶୟରେ ଗୋଟିଏ ଜଳ-ରାକ୍ଷସ ବାସକରୁଥିଲା । ସେହି ଜଳାଶୟ ଭିତରକୁ ଯାଉଥିବା ଯେ କୌଣସି ପ୍ରାଣୀକୁ ସେ ଖାଇ ଯାଉଥିଲା ।

ସେହି ସମୟରେ ବୋଧିସତ୍ତ୍ୱ ଏକ ମାଙ୍କଡ ଜନ୍ମ ଗ୍ରହଣ କରିଥିଲେ । ସେ ସେହି ନିଘଞ୍ଚ ଅରଣ୍ୟ ଭିତରେ ବାସ କରୁଥିଲେ । ତାଙ୍କ ଅଧୀନରେ ଅଶୀ ହଜାର ମାଙ୍କଡ ଥିଲେ । ସେ ସେହି ମାଙ୍କଡ ଦଳର ଅଧିପତି ଥିଲେ ଓ ସେମାନଙ୍କୁ ଆପଦ ବିପଦରୁ ରକ୍ଷା କରୁଥିଲେ ।

ସେ ତାଙ୍କର ଅଧୀନସ୍ଥ ମାଙ୍କଡମାନଙ୍କୁ ଉପଦେଶ ଦେଇ କହୁଥିଲେ, ଏ ଅରଣ୍ୟ ଭିତରେ ଅନେକ ବିଷାକ୍ତ ଗଛ ଅଛି । ଅରଣ୍ୟର ଜଳାଶୟରେ ରାକ୍ଷସମାନେ ବାସ କରିଥାଆନ୍ତି । ତେଣୁ ତୁମ୍ଭେମାନେ କୌଣସି ନୂତନ ବୃକ୍ଷର ଫଳ ଖାଇବା ପୂର୍ବରୁ ଓ ନୂତନ କରି କୌଣସି ଜଳାଶୟରେ ଜଳ ଗ୍ରହଣ କରିବା ପୂର୍ବରୁ ମୋର ପରାମର୍ଶ ନେଉଥିବ । ଦଳର ମାଙ୍କଡମାନେ ତାଙ୍କ ଉପଦେଶ ପାଳନ କରିବା ସକାଶେ ସ୍ୱୀକୃତି ପ୍ରଦାନ କରିଥିଲେ ।

ଦିନେ ଏହି ମାଙ୍କଡ ଦଳ ଖାଦ୍ୟ ଖୋଜି ଖୋଜି ଗୋଟିଏ ଅଚିହ୍ନା ସ୍ଥାନରେ ପହଞ୍ଚିଗଲେ । ସେତେବେଳେ ସେମାନେ ତୃଷାର୍ତ୍ତ ଥିଲେ । ନିକଟରେ ସେମାନେ ଗୋଟିଏ ଜଳାଶୟର ସନ୍ଧାନ ମଧ୍ୟ ପାଇଲେ । କିନ୍ତୁ ଏହି ଜଳାଶୟଟି ତାଙ୍କ ପକ୍ଷରେ

ନୂତନ ଥିବାରୁ ବୋଧିସତ୍ତ୍ୱଙ୍କର ବିନା ପରାମର୍ଶରେ ଜଳ ଗ୍ରହଣରୁ ନିବୃତ୍ତ ରହି, ବୋଧିସତ୍ତ୍ୱଙ୍କର ଆଗମନକୁ ଅପେକ୍ଷା କଲେ ।

କିଛି ସମୟ ପରେ ବୋଧିସତ୍ତ୍ୱ ସେହି ସ୍ଥାନରେ ପହୁଞ୍ଚିଗଲେ । ଜଳାଶୟ ପାର୍ଶ୍ୱରେ ଅପେକ୍ଷାମାନ ଅନୁଚରମାନଙ୍କୁ ଦେଖି ପ୍ରଶ୍ନ କଲେ—କଥା କଅଣ ? ତୁମେ ସବୁ ଜଳ ଗ୍ରହଣ କରୁନାହଁ କାହିଁକି ?

—ଏ ସ୍ଥାନ ଓ ଏହି ଜଳାଶୟ ଉଭୟ ଆମପାଇଁ ନୂଆ । ତେଣୁ ଆପଣଙ୍କର ପରାମର୍ଶ ଅପେକ୍ଷାରେ ଅଛୁ । ଆପଣ କହିଲେ, ଆମେ ଯାଇ ଜଳ ଗ୍ରହଣ କରିବୁ । ମାଙ୍କଡମାନେ ପ୍ରକାଶ କଲେ ।

ଦଳପତି ଏ ଉତ୍ତର ପାଇ ସନ୍ତୁଷ୍ଟ ହେଲେ । ସେ ସେହି ଜଳାଶୟର ଚତୁର୍ଦ୍ଦିଗ ବୁଲି ପରୀକ୍ଷା କରିବାକୁ ଲାଗିଲେ । ସେ ଲକ୍ଷ୍ୟକଲେ ଯେ, ପ୍ରାଣୀମାନଙ୍କର ଜଳାଶୟ ଭିତରକୁ ଯିବାର ପଦଚିହ୍ନ ପଡିଛି ; କିନ୍ତୁ ଜଳାଶୟରୁ କାହାରି ହେଲେ ଫେରି ଆସିବାର ପଦଚିହ୍ନ ଦେଖାଯାଉ ନାହିଁ । ଏଣୁ ସେ ସ୍ଥିର ସିଦ୍ଧାନ୍ତରେ ଉପନୀତ ହେଲେ ଯେ, ଜଳାଶୟ ଭିତରେ ନିଶ୍ଚୟ କୌଣସି ଦୁଷ୍ଟ ରାକ୍ଷସ ରହିଛି । ଯିଏ ଜଳାଶୟ ଭିତରେ ପ୍ରବେଶ କରୁଛି, ତାକୁ ମାରି ଖାଇ ଯାଉଛି । ସେଥିପାଇଁ କାହାରି ହେଲେ ଜଳାଶୟ ଭିତରୁ ଫେରିବାର ପଦଚିହ୍ନ ଦୃଷ୍ଟିଗୋଚର ହେଉନାହିଁ ।

ଏହାପରେ ସେ ଦଳର ଅନୁଚରମାନଙ୍କୁ କହିଲେ-ବନ୍ଧୁଗଣ, ତୁମେ ଜଳାଶୟ ଭିତରେ ପ୍ରବେଶ ନ କରି ମୋତେ ଅପେକ୍ଷା କରିବା ଦ୍ୱାରା ଉତ୍ତମ କାର୍ଯ୍ୟ କରିଛ । କାରଣ, ମୁଁ ପରୀକ୍ଷା କରି ଜାଣିଲି, ଏହି ଜଳାଶୟରେ ଗୋଟିଏ ଦୁଷ୍ଟ ରାକ୍ଷସ ବାସକରୁଛି । ତୁମ୍ଭେମାନେ ଅଜଣାରେ ପ୍ରବେଶ କରିଥିଲେ ପ୍ରାଣ ହରାଇଥାନ୍ତ ।

ଦୁଷ୍ଟ ରାକ୍ଷସ ଅଶୀ ହଜାର ମାଙ୍କଡଙ୍କୁ ଜଳାଶୟ ନିକଟରେ ରୁଣ୍ଡ ହୋଇ ଥିବାର ଦେଖି ମନେ ମନେ ଖୁସି ହେଉଥିଲା । କିନ୍ତୁ ଜଣେହେଲେ ଜଳାଶୟ ଭିତରେ ପ୍ରବେଶ କରୁ ନଥିବା ଦେଖି, ଭୀଷଣ ବିକଟାଳ ରୂପ ଧରି ସେମାନଙ୍କ ସମ୍ମୁଖରେ ପ୍ରବେଶ ହୋଇ କହିଲା—ତୁମେ ସବୁ ଖାଲିଟାରେ ଏଇଠି ବସି ରହିଛ କାହିଁକି ? ଯଦି ତୃଷା ହେଉଥାଏ, ଜଳାଶୟ ଭିତରକୁ ଯାଇ ଜଳ ଗ୍ରହଣ କର । ଜଳାଶୟ ଉପରେ ବସି ଜଳକୁ ଅନେଇ ରହିଲେ ତୃଷା ମେଣ୍ଟେ ନାହିଁ ।

ତୁମେ ଏହି ଜଳାଶୟର ରାକ୍ଷସ ନୁହଁକି ? ବୋଧିସତ୍ତ୍ୱ ତାର ଉତ୍ତର ଦେବାକୁ ଯାଇ ପ୍ରତିପ୍ରଶ୍ନ କଲେ ।

- ହଁ, ମୁଁ ଏହି ଜଳାଶୟର ରାକ୍ଷସ । ସେଇଠୁ କଅଣ ହେଲା ?

ଏହି ଜଳାଶୟ ଭିତରେ ପ୍ରବେଶ କରୁଥିବା ପ୍ରାଣୀମାନେ ତୁମର ଶିକାର ହୁଅନ୍ତି କି ନାହିଁ କହିଲ ? ବୋଧିସତ୍ତ୍ୱ ପ୍ରଶ୍ନ କଲେ ।

ହଁ, ଏହି ଜଳାଶୟ ଭିତରେ ପ୍ରବେଶ କରୁଥିବା ସମସ୍ତଙ୍କୁ ମୁଁ ଭକ୍ଷଣ କରେ । ତୁମ୍ଭେମାନେ ମଧ୍ୟ ଆଜି ମୋର ଆହାର ହେବ । ରାକ୍ଷସ କହିଲା ।

କିନ୍ତୁ ଆମକୁ ତୁମେ ଖାଇ ପାରିବ ନାହିଁ । ବୋଧିସତ୍ତ୍ୱ ପ୍ରକାଶ କଲେ ।

ତୁମେ ସମସ୍ତେ ତୃଷାର୍ତ୍ତ ଏହା ମୁଁ ଜାଣେ । ନିକଟରେ ମଧ୍ୟ ଆଉ କୌଣସି ଜଳାଶୟ ନାହିଁ । ତୁମେ ଅବଶ୍ୟ ଏହି ଜଳାଶୟରୁ ଜଳଗ୍ରହଣ କରିବ । ସେତେବେଳେ ତୁମେ ଆଉ ମୋ' ହାବୁଡରୁ ବର୍ତ୍ତିଯାଇ ପାରିବ ନାହିଁ । ଦୁଷ୍ଟ ରାକ୍ଷସ ପ୍ରକାଶ କଲା ।

ଆମେ ତୃଷାର୍ତ୍ତ ଓ ଏହି ଜଳାଶୟରୁ ଜଳ ଗ୍ରହଣ କରିବୁ, ଏହା ସ୍ୱତଃସିଦ୍ଧ କଥା ; କିନ୍ତୁ ଏ କଥା ମଧ୍ୟ ସତ୍ୟ ଯେ, ତୁମେ ଆମର ଅନିଷ୍ଟ କରି ପାରିବ ନାହିଁ ।

ତୁମେ ଜଳାଶୟ ଭିତରେ ପ୍ରବେଶ କରି ଜଳ ଗ୍ରହଣ କରୁଛ, ଏହା ସ୍ୱତଃସିଦ୍ଧ । ଏହାହେଲେ, ତୁମର ରକ୍ଷାନାହିଁ । ରାକ୍ଷସ କହିଲା ।

ଆମେ ଜଳାଶୟ ଭିତରେ ପ୍ରବେଶ ନ କରି ମଧ୍ୟ ଜଳଗ୍ରହଣ କରିବୁ । ବୋଧିସତ୍ତ୍ୱ ଉତ୍ତର ଦେଲେ ।

ଏହା କିପରି ସମ୍ଭବ ? ଦୁଷ୍ଟ ରାକ୍ଷସ ପ୍ରଶ୍ନ କଲା ।

ଦେଖ କଅଣ ହେଉଛି । ବୋଧିସତ୍ତ୍ୱ ପ୍ରକାଶ କଲେ ।

ଏହାପରେ ବୋଧିସତ୍ତ୍ୱ ନିକଟସ୍ଥ ଏକ ନଳବଣରୁ ନଳଟିଏ ଆଣି ମନ୍ତ୍ର ବଳରେ ତା' ଭିତରର ଗଣ୍ଠିସବୁ ଫୁଟାଇ ଦେଲେ । ନଳରୁ ଗୋଟିଏ ପାର୍ଶ୍ୱ ନିଜ ମୁହଁ ପାଖରେ ରଖି ଅପର ପାର୍ଶ୍ୱକୁ ଜଳାଶୟ ଭିତରକୁ ନିକ୍ଷେପ କଲେ । ତା'ପରେ ଅନାୟାସରେ ସେହି ନଳରୁ ପାଣି ପିଇଲେ ଓ ଅନ୍ୟମାନଙ୍କୁ ସେକଥା ଦେଖାଇ ଦେଲେ । ଏହାପରେ ବୋଧିସତ୍ତ୍ୱ ସମଗ୍ର ନଳବଣର ଚତୁର୍ଦ୍ଦିଗରେ ବେଢାଏ ବୁଲି ମନ୍ତ୍ର ଉଚ୍ଚାରଣ କଲେ । ମନ୍ତ୍ର ବଳରେ ନଳ ବଣରେ ଥିବା ସମସ୍ତ ନଳର ଭିତରେ ଗଣ୍ଠିସବୁ

ମେଲା ହୋଇଗଲା । ଏହା ବୋଧିସତ୍ତ୍ୱଙ୍କର ପୁଣ୍ୟ ବଳରୁ ସମ୍ଭବ ହେଲା ।

ବୋଧିସତ୍ତ୍ୱଙ୍କ ପରାମର୍ଶ ଅନୁଯାୟୀ ଅଶୀ ହଜାର ମାଙ୍କଡ଼ ସେହି ନଳବନରୁ ଗଣ୍ଠି ନଥିବା ନଳ ସଂଗ୍ରହ କରି ଜଳାଶୟରୁ ଜଳପାନ କଲେ । ସେମାନଙ୍କୁ ଆଉ ଭିତରକୁ ଓହ୍ଲାଇବାକୁ ପଡ଼ିଲା ନାହିଁ ।

ଦୁଷ୍ଟ ରାକ୍ଷସ ଏହା ଦେଖି ଭୀଷଣ ବିରକ୍ତ ହେଲା ଓ କିଂକର୍ତ୍ତବ୍ୟବିମୂଢ଼ ହୋଇ ଜଳଭିତରେ ଥିବା ନିଜ ବାସସ୍ଥାନରେ ଆତ୍ମଗୋପନ କଲା । ବୋଧିସତ୍ତ୍ୱ ମଧ୍ୟ ଏହିପରି ଉପାୟରେ ନିଜ ଦଳର ମାଙ୍କଡ଼ମାନଙ୍କୁ ନିଶ୍ଚିତ ମରଣ ମୁହଁରୁ ରକ୍ଷାକରି ନିରାପଦରେ ନିଜ ବାସସ୍ଥାନକୁ ଫେରିଗଲେ ।

(ଜଳପାନ ଜାତକ)






ଏକଦା ବୋଧିସତ୍ତ୍ୱ ବୃକ୍ଷ-ଦେବତା ରୂପେ ଜନ୍ମଗ୍ରହଣ କରିଥିଲେ ।

ସେହି ବୃକ୍ଷଟି ଏକ ପଦ୍ମ ପୋଖରୀ କୂଳରେ ଅବସ୍ଥିତ ଥିଲା ।

ଗ୍ରୀଷ୍ମ ଋତୁରେ ପଦ୍ମ ପୋଖରୀର ଜଳ ଶୁଖିଗଲା । ପଦ୍ମ ପୋଖରୀର ମାଛମାନେ ଜଳର ସ୍ୱଳ୍ପତା ହେତୁ ଅସୁବିଧା ଭୋଗ କଲେ । ଏହି ମତ୍ସ୍ୟମାନଙ୍କୁ ଦେଖି ଗୋଟିଏ ବକ ମନେ ମନେ ଭାବିବାକୁ ଲାଗିଲା, ଏମାନଙ୍କୁ ଉଦରସ୍ଥ କରିବା ପାଇଁ ଉପାୟ ଉଦ୍ଭାବନ କରିବାକୁ ହେବ । ଏଇଆ ସ୍ଥିରକରି ସେ ଜଳାଶୟ ନିକଟରେ ଧ୍ୟାନମଗ୍ନ ଅବସ୍ଥାରେ ବସି ରହିଲା ।

ମତ୍ସ୍ୟମାନେ ବକର ଧ୍ୟାନମଗ୍ନ ଅବସ୍ଥା ଦେଖି କୌତୂହଳ ପ୍ରକାଶ କଲେ ଏବଂ ପ୍ରଶ୍ନ କଲେ--କି ମହାଶୟ ! ଏଠାରେ ଏମିତି ମୂକ ଅବସ୍ଥାରେ ବସି ରହିଲେ ଯେ ! କଥା କଣ ?

ମୁଁ ତୁମରି କଥା ହିଁ ଚିନ୍ତା କରୁଥିଲି । ବକ ଉତ୍ତର ଦେଲା ।

ଆମରି କଥା ! ସେ ପୁଣି କଅଣ ? ମତ୍ସ୍ୟମାନେ ପ୍ରଶ୍ନକଲେ ।

ଏହି ପୁଷ୍କରିଣୀର ଜଳ ଶୁଖି ଆସିଲାଣି । ପ୍ରଚଣ୍ଡ ରୌଦ୍ରତାପ ହେଉଛି । ଅଳ୍ପ କିଛିଦିନ ପରେ ଅବଶିଷ୍ଟ ଜଳ ଶୁଖିଯିବ । ତାପରେ ତୁମେ କରିବ କଣ ? ମୃତ୍ୟୁ ଯେ ଅନିବାର୍ଯ୍ୟ ।

ସତେ ତ ! ଆମେ କରିବୁ କଅଣ ? ମତ୍ସ୍ୟମାନେ ହଠାତ୍ ଚମକି ପଡ଼ି ଉପାୟ ପଚାରିଲେ ।

ବକ ଦେଖିଲା, ଔଷଧ କାର୍ଯ୍ୟ କରିଛି । ସହାନୁଭୂତିଶୀଳ ସ୍ୱରରେ କହିଲା—ମୋ କଥା ଯଦି ଶୁଣିବ, ଏ ସ୍ଥାନ ଛାଡି ଚାଲି ଯାଅ । ଅଳ୍ପ ଦୂରରେ ଏକ ସୁଗଭୀର ଓ ସୁବିଶାଳ ଜଳାଶୟ ଥିବାର ମୁଁ ଜାଣେ । ସେଇଠି ଅନେକ ଜଳ ଅଛି । ସ୍ୱଚ୍ଛ

ରୌଦ୍ରରେ ତାହା ଶୁଖିଯିବାର ଆଶଙ୍କା ନାହିଁ । ସେଇଠିକି ଗଲି-ଗଲେ ତୁମ ସମସ୍ତଙ୍କର ମଙ୍ଗଳ ହେବ ।

କିନ୍ତୁ ଆମେ ଜଳଚର ପ୍ରାଣୀମାନେ ସେଠାକୁ ଯିବୁ କେମିତି ? - ମତ୍ସ୍ୟମାନେ ପ୍ରଶ୍ନ କଲେ ।

କାହିଁକି ଯାଇ ପାରିବ ନାହିଁ ? ତୁମ୍ଭେମାନେ ରାଜିହେଲେ, ମୁଁ ମୋ' ଥଣ୍ଟରେ ଜଣ ଜଣ କରି ନେଇ ସେହି ଜଳାଶୟରେ ପହଞ୍ଚାଇ ଦେଇପାରିବି । ବକ କହିଲା ।

ବକର ଏ ଉତ୍ତର ଶୁଣି ମତ୍ସ୍ୟମାନଙ୍କର ମନ ପାଇଲା ନାହିଁ । ସେମାନେ କହିଲେ—ସୃଷ୍ଟିର ଆରମ୍ଭରୁ କୌଣସି ବକ ଆମପାଇଁ ଏପ୍ରକାର ଚିନ୍ତାକରି ନଥିଲେ । ଆମର ମନେହୁଏ, ଆମକୁ ଥଣ୍ଟରେ ଅନ୍ୟ ଜଳାଶୟକୁ ନେଇ ଯିବାର ପ୍ରଲୋଭନ ଦେଖାଇ ବକଟି ଆମକୁ ଖାଇଯିବାର ଚକ୍ରାନ୍ତ କରୁଛି ।

ବକ ଏହା ଶୁଣି କହିଲା—ମୋ' ଉପରେ ବିଶ୍ୱାସ ରଖ, ମୁଁ ତୁମକୁ ଖାଇବି ନାହିଁ । ତୁମର ଯଦି ମୋ' କଥାରେ ସନ୍ଦେହ ହେଉଥାଏ, ତାହା ହେଲେ ତୁମ ଭିତରୁ ଜଣକୁ ମୋ' ସଙ୍ଗରେ ପଠାଇ ମୋ' କଥାର ପରୀକ୍ଷା ନିଅ । ମୁଁ ତାକୁ ନେଇ ସେହି ପଦ୍ମଫୁଲ ଭରା ଜଳାଶୟ ଦେଖାଇ ଆଣିବି ।

ଏହାପରେ ମାଛମାନେ ବିଚାର କରି ତାଙ୍କ ଭିତରେ ଥିବା ଏକ ବଳବାନ ମାଛକୁ ବାଛିଲେ । ତାର ନାମ ଥିଲା ଏକାକ୍ଷ । କୌଣସି କାରଣରୁ ତାର ଗୋଟିଏ ଆଖି ଫୁଟି ଯାଇଥିଲା । ମାଛମାନେ ଭାବିଲେ, ବକର ଯଦି ଅନ୍ୟ କୌଣସି ମନ୍ଦ ବିଚାର ଥାଏ, ଏକାକ୍ଷ ତାକୁ ଉଚିତ ଶିକ୍ଷା ଦେଇ ପାରିବ ।

ମାଛମାନଙ୍କର ବିଚାରକ୍ରମେ ବକ ଏକାକ୍ଷକୁ ଥଣ୍ଟରେ ନେଇ ଅନ୍ୟ ଏକ ବୃହତ୍ ଜଳାଶୟରେ ପହଞ୍ଚାଇ ଦେଲା । ଏକାକ୍ଷ ନିଜେ ସେହି ବୃହତ୍ ଜଳାଶୟର ଅବସ୍ଥିତି ଅନୁଭବ କଲା ଓ ନିଜ ଚକ୍ଷୁରେ ତାର ସୌନ୍ଦର୍ଯ୍ୟ ଉପଭୋଗ କଲା । ଏକାକ୍ଷ ଏହି ଜଳାଶୟ ଦେଖି ମୁଗଧ ହୋଇଛି ବୋଲି ଜାଣି ପାରିବା ପରେ, ବକ ତାକୁ ପୁନର୍ବାର ଥଣ୍ଟରେ ନେଇ ଅନ୍ୟ ମାଛମାନଙ୍କ ମେଳରେ ଛାଡିଦେଲା ।

ଏକାକ୍ଷ ପାଖରୁ ନୂତନ ଜଳାଶୟର ପ୍ରଶଂସା ଶୁଣିବା ପରେ ଅନ୍ୟ ସମସ୍ତ ମାଛ ସେଠାକୁ ଯିବାକୁ ବ୍ୟଗ୍ରତା ପ୍ରକାଶ କଲେ ।

ପ୍ରଥମେ ବକ ଏକାକ୍ଷକୁ ନେବାକୁ ପ୍ରସ୍ତୁତ ହେଲା । ସେ ଏକାକ୍ଷକୁ ଥଣ୍ଟରେ ଧରି ଜଳାଶୟ ନିକଟକୁ ନେଲା ସତ, କିନ୍ତୁ ତାକୁ ଜଳରେ ଛାଡି ନ ଦେଇ, ଜଳାଶୟ ଉପକଣ୍ଠରେ ଥିବା

ଗୋଟିଏ ବୃକ୍ଷ ଶାଖାରେ ଏପରି ପ୍ରହାର କଲା ଯେ, ଏକାକ୍ଷର ପ୍ରାଣବାୟୁ ଉଡ଼ିଗଲା । ତା'ପରେ ସେ ଆରାମରେ ତାକୁ ଖାଇଗଲା ଓ ତା'ଦେହର କଣ୍ଟାଗୁଡ଼ିକ ବୃକ୍ଷ ମୂଳରେ ନିକ୍ଷେପ କଲା । ତାପରେ ସେ ଅନ୍ୟ ମାଛମାନଙ୍କ ପାଖକୁ ଫେରିଯାଇ ଏକାକ୍ଷକୁ ନୂତନ ପୁଷ୍କରିଣୀ ଭିତରେ ଛାଡ଼ିଦେଇ ଆସିଥିବା ସମ୍ବାଦ ଦେଲା । ଏହି ପରି ଉପାୟରେ ପୂର୍ବ ଜଳାଶୟର ସବୁ ମାଛଙ୍କୁ ସେ ମାରି ଖାଇଗଲା ।

ଅବଶେଷରେ ଜଳାଶୟର ସବୁ ମାଛ ଶେଷ ହୋଇଗଲେ । ବକଟି ଦେଖିଲା, ସେଇଠି ଗୋଟିଏ କଙ୍କଡ଼ା ଅବଶିଷ୍ଟ ହୋଇ ରହିଯାଇଛି । ସେହି କଙ୍କଡ଼ାକୁ ମଧ୍ୟ ମାରି ଖାଇବାକୁ ବକର ଇଚ୍ଛା ହେଲା । ତେଣୁ ତାକୁ ଡାକି କହିଲା ତୁମେ ଆଉ ଏଇଠି ଏକା ରହିବ କାହିଁକି ? ଚାଲ ତୁମକୁ ମଧ୍ୟ ନୂତନ ଜଳାଶୟରେ ଛାଡ଼ିଦେବି ।

କିନ୍ତୁ ତୁମେ ମୋତେ ସେଠାକୁ ନେବ କେମିତି ? କଙ୍କଡ଼ା ପ୍ରଶ୍ନ କଲା ।

କାହିଁକି, ଯେମିତି ମାଛମାନଙ୍କୁ ନେଇଗଲି, ତୁମକୁ ମଧ୍ୟ ସେମିତି ମୋ ଥଣ୍ଟ ସାହାଯ୍ୟରେ ନେଇଯିବି ଯେ । ବକ ଉତ୍ତର ଦେଲା ।

କିନ୍ତୁ ମୋତେ ବାଟରେ ଯଦି କେଉଁଠି ପକାଇଦିଅ ? କଙ୍କଡ଼ା ପଚାରିଲା ।

ନା, ସେ କଥା ହେବ ନାହିଁ । ମୋ' ଉପରେ ବିଶ୍ୱାସ ରଖ । ବକ ଆଶ୍ୱାସନା ଦେଲା ।

ନା, ନା, ତୁମେ ମୋତେ ଜୋରରେ ଧରି ପାରିବନି ; ବରଂ ମୋ' ପାଦରେ ମୁଁ ତୁମକୁ ଜୋରକରି ଧରି ପାରିବି । ତେଣୁ ମୋତେ ପିଠିରେ ବସାଇ ନେଇଯାଅ । ମୁଁ ମୋ' ପାଦରେ ତୁମ ଗଳାକୁ ଧରିଥିବି । ତାହାହେଲେ ମୋର ଆଉ ପଡ଼ିଯିବାର ଭୟ ରହିବ ନାହିଁ । କଙ୍କଡ଼ା ପ୍ରକାଶ କଲା ।

କଙ୍କଡ଼ା ଯେ ଓଲଟା ବକର ପ୍ରାଣ ନେବାକୁ ମନସ୍ଥ କରିଛି ସେ କଥା ବକ ବୁଝି ପାରିଲା ନାହିଁ । ସେ କଙ୍କଡ଼ାକୁ ସନ୍ଦେହ ନ କରି ନିଜ ପିଠିରେ ବସାଇଲା ଓ କଙ୍କଡ଼ାଟି ଯେତେବେଳେ ତା' ପାଦରେ ବକର ଗଳାଦେଶକୁ ଛନ୍ଦି ଧରିଲା, ସେ ସେଥିରେ ଆପତ୍ତି କଲାନାହିଁ ।

ସେମାନେ ଏହିପରି ଉପାୟରେ ଛନ୍ଦାଛନ୍ଦି ହୋଇ ଉଡ଼ିବାକୁ ଲାଗିଲେ ।

ବକ ଆକାଶ ମାର୍ଗରେ ଉଡି ଯାଉ ଯାଉ କଙ୍କଡ଼ାକୁ ପ୍ରଥମେ ଜଳାଶୟ ଦେଖାଇ ତାପରେ ଅନ୍ୟତ୍ର ସେହି ବୃକ୍ଷ ଆଡକୁ ନେଇଗଲା ।

କଙ୍କଡ଼ା ଏହା ଦେଖି ପ୍ରଶ୍ନ କଲା—ମୋତେ ଜଳାଶୟରେ ନ ଛାଡ଼ି ଏପଟେ ଆଣୁଛ କାହିଁକି ?

ବକ କହିଲା–ନିର୍ବୋଧ, ତଳକୁ ଚାହଁ । ଏଇ ଯେଉଁ କଣ୍ଟାସବୁ ପଡ଼ିଛି, ସେସବୁ ମୁଁ ଥଣ୍ଟରେ ପୂରାଇ ବୋହି ଆଣିଥିବା ମାଛମାନଙ୍କର । ମୁଁ ସେମାନଙ୍କୁ ଉଦରସ୍ଥ କରିଛି । ତୁ କଅଣ ଭାବିଥିଲୁ, ମୁଁ ଚାକର ପରି ମାଛମାନଙ୍କୁ ସ୍ଥାନାନ୍ତର କରି ସେମାନଙ୍କ ଉପକାର କରୁଛି ବୋଲି ? ମୁଁ ମୂର୍ଖ ନୁହେଁ ।

କଙ୍କଡ଼ା ଏହା ଶୁଣି ଉତ୍ତର ଦେଲା—ଆଉ କଅଣ ଭାବିଛୁ, ମୁଁ ମୂର୍ଖ ବୋଲି ? ଚାହିଁଲେ ମୋ' ପାଦ ନଖରେ ସଣ୍ଢୁଆସି ପରି ତୋର ଗଳା ଚିପି ନିମିଷକ ଭିତରେ ତୋତେ ମାରିଦେବି । ଏହା କହି କଙ୍କଡ଼ଟି ଧୀରେ ଧୀରେ ତାର ଗଳା ଦେଶକୁ ନଖେଇବାକୁ ଲାଗିଲା ।

ବକ ଏଥର ତା' ନିଜ ମୂର୍ଖାମୀ ବୁଝି ପାରିଲା । ଅନୁନୟ କଲା, ନା, ନା, ମୋତେ ମାରନା । ଯେଉଁଠି କହିବୁ, ସେଠିକି ନେଇ ପହୁଞ୍ଚାଇ ଦେବି ।

କଙ୍କଡ଼ାଟି ତାକୁ ପୁଷ୍କରିଣୀର ପଙ୍କୁଆ ଅଂଶରେ ଓହ୍ଲାଇ ଦେବାକୁ ଆଦେଶ ଦେଲା ଓ ବକ ସେ ଆଦେଶ ପାଳନ କଲା ।

କଙ୍କଡ଼ାଟି ପଙ୍କ ଭିତରେ ଅବତରଣ କଲା ମାତ୍ରେ ବକର ଗଳାଚିପି ମାରି ପକାଇଲା ।

ବୃକ୍ଷ ଦେବତା ରୂପୀ ବୋଧିସତ୍ତ୍ୱ ଏ ସମସ୍ତ ଘଟଣା ଲକ୍ଷ୍ୟ କରୁଥିଲେ । ବକର ଅବଶେଷରେ ମୃତ୍ୟୁ ହେବାର ଦେଖି କହିଲେ—ପ୍ରତାରଣା ମହାପାପ । ଯିଏ ଅନ୍ୟକୁ ପ୍ରତାରଣା କରେ, ସେ ନିଶ୍ଚୟ ଅନ୍ୟଦ୍ୱାରା ପ୍ରତାରିତ ହୋଇଥାଏ ।

(ବକ ଜାତକ)






ରାଜା ବ୍ରହ୍ମଦତ୍ତ କାଶୀ ରାଜ୍ୟରେ ରାଜୁତି କଲାବେଳେ, ବୋଧିସତ୍ତ୍ୱ ସେଠାରେ ଏକ ପଥୁରିଆ ପରିବାରରେ ଜନ୍ମଗ୍ରହଣ କରିଥିଲେ । କାଳକ୍ରମେ ବୋଧିସତ୍ତ୍ୱ ପାରିବାରିକ ଜୀବିକାରେ ପାରଦର୍ଶିତା ଲାଭକଲେ ଏବଂ ଜଣେ କୁଶଳୀ କାରିଗର ରୂପେ ଖ୍ୟାତି ଅର୍ଜନ କଲେ ।

ଠିକ୍ ଏହି ସମୟରେ କାଶୀ ରାଜ୍ୟରେ ଜଣେ ଅତ୍ୟନ୍ତ ଧନଶାଳୀ ବଣିକ ବାସ କରୁଥିଲେ । ସେ ଚାଳିଶ କୋଟି ସ୍ୱର୍ଣ୍ଣ ମୁଦ୍ରାର ଅଧିକାରୀ ଥିଲେ । ଏହି ବଣିକଙ୍କର ପତ୍ନୀଙ୍କ ଧନ ପ୍ରତି ଅତ୍ୟନ୍ତ ଲୋଭ ଥିଲା । ତେଣୁ ମୃତ୍ୟୁପରେ ପର ଜନ୍ମରେ ସେ ସେହି ଗୃହରେ ଗୋଟିଏ ମାଈ ମୂଷା ହୋଇ ଜନ୍ମଲାଭ କଲେ ।

କାଳକ୍ରମେ ସେହି ପରିବାରର ସମସ୍ତେ ମୃତ୍ୟୁ ମୁଖରେ ପଡ଼ିଲେ । ସେହି ଧନୀକର ପ୍ରାସାଦ ଭଗ୍ନ ସ୍ତୂପରେ ପରିଣତ ହେଲା । ସମଗ୍ର ଗ୍ରାମଟି ପରିତ୍ୟକ୍ତ ଶ୍ମଶାନ ପାଲଟି ଗଲା ।

ବୋଧିସତ୍ତ୍ୱ ଏହି ସମୟରେ ସେହି ନିର୍ଜନ ଗ୍ରାମର ଭଗ୍ନ ସ୍ତୂପ ନିକଟରେ ପଥର କାଟୁଥିଲେ । ମାଈ ମୂଷା ରୂପରେ ଜନ୍ମଗ୍ରହଣ କରିଥିବା ବଣିକ ପତ୍ନୀ ସେହି ଭଗ୍ନ ପ୍ରାସାଦ ଭିତରେ ସେତେବେଳେ ମଧ୍ୟ ଜୀବିତା ଥାଏ । ସେ ଖାଦ୍ୟ ଅନ୍ୱେଷଣରେ ବୁଲିଲାବେଳେ ପ୍ରତ୍ୟହ ବୋଧିସତ୍ତ୍ୱଙ୍କୁ ପଥର କାଟୁଥିବାର ଦେଖେ । ବାରମ୍ବାର ତାଙ୍କୁ ଦେଖି ମୂଷିକାର ତାଙ୍କ ପ୍ରତି ଅନୁରକ୍ତି ଜାତ ହେଲା । ସେ ମନେ ମନେ ଭାବିଲା, କ୍ରମେ ତାରି ବାସ କରୁଥିବା ପ୍ରାସାଦ ଓ ଗ୍ରାମ ଜନମାନବ ଶୂନ୍ୟ ହୋଇଗଲା । ତାର ମୃତ୍ୟୁପରେ ତାଙ୍କରି ପ୍ରାସାଦରେ ପୋତା ହୋଇଥିବା ଧନର ସମ୍ବାଦ ବି ଲୋପ ପାଇଯିବ । ତେଣୁ ଜୀବିତାବସ୍ଥାରେ ପୋତା ଧନର ସମ୍ବାଦ ଶୁଣାଇ ପଥୁରିଆକୁ ସୁଖୀ କରାଯାଇପାରେ । ତଦ୍ୱାରା ସେ ନିଜେ ମଧ୍ୟ ଉପକୃତ ହେବ ।

ଏପରି ବିଚାର କରି, ସେ ଦିନେ ବୋଧିସତ୍ତ୍ୱଙ୍କ ନିକଟକୁ ମୁହଁରେ ସ୍ୱର୍ଣ୍ଣମୁଦ୍ରାଟିଏ ଆଣି ହାଜର ହେଲା ।

ବୋଧିସତ୍ତ୍ୱ ମୂଷିକାକୁ ସ୍ୱର୍ଣ୍ଣମୁଦ୍ରା ନେଇ ଆସିଥିବା ଦେଖି ପ୍ରଶ୍ନକଲେ, ସ୍ୱର୍ଣ୍ଣମୁଦ୍ରା ନେଇ ମୋ ପାଖକୁ ଆସିବାର ଉଦ୍ଦେଶ୍ୟ କଣ ?

ମାଈ ମୂଷାଟି କହିଲା, ଏ ସ୍ୱର୍ଣ୍ଣମୁଦ୍ରାଟି ମୁଁ ତୁମକୁ ଦେଉଛି । ଏହାରି ସାହାଯ୍ୟରେ ତୁମେ ମୋ ପାଇଁ ଓ ତୁମ ପାଇଁ ମାଂସ କ୍ରୟ କରିବ । ବଳକା ଧନ ତୁମ ପାଇଁ ସଞ୍ଚୟ କରିବ ।

ବୋଧିସତ୍ତ୍ୱ ସମ୍ମତି ପ୍ରକାଶ କରି ମାଈ ମୂଷା ନିକଟରୁ ସ୍ୱର୍ଣ୍ଣମୁଦ୍ରାଟି ଗ୍ରହଣ କଲେ । ତହିଁରେ ନିଜ ପାଇଁ ଓ ମୂଷାପାଇଁ ମାଂସ କ୍ରୟ କଲେ । ମୂଷା ସେ ମାଂସ ଖାଇ ତୃପ୍ତି ଲାଭ କଲା । ଏହିପରି ଭାବରେ ମାଈ ମୂଷାଟି ପ୍ରତ୍ୟହ ବୋଧିସତ୍ତ୍ୱଙ୍କୁ ସ୍ୱର୍ଣ୍ଣମୁଦ୍ରା ଦେଉଥିଲା ଓ ପ୍ରତି ବଦଳରେ ବୋଧିସତ୍ତ୍ୱଙ୍କ ନିକଟରୁ ମାଂସ ପାଇ ତୃପ୍ତିଲାଭ କରୁଥିଲା ।

ଦିନେ ଦୁର୍ଭାଗ୍ୟକ୍ରମେ ମାଈ ମୂଷାଟି ଗୋଟିଏ ବିରାଡ଼ିର ହାବୁଡ଼ରେ ପଡ଼ିଲା । ବିରାଡ଼ିକୁ ସେ ଅନୁନୟ କରି କହିଲା, ମୋତେ ମାରନାହିଁ । ଛାଡ଼ିଦିଅ ।

ବିରାଡ଼ି କହିଲା, ମୁଁ କ୍ଷୁଧାର୍ତ୍ତ । ତୁ ମୋର ଭକ୍ଷ୍ୟ । ତୋତେ ମାରିବି ନାହିଁ କାହିଁକି ?

ମୂଷା କହିଲା, ମୋତେ ମାରି ଖାଇଲେ କଣ ସବୁଦିନ ପାଇଁ ତୁମର କ୍ଷୁଧା ନିବାରଣ ହୋଇ ପାରିବ ?

ବିରାଡ଼ି କହିଲା, ତାହା ସମ୍ଭବ ହେବ କିପରି ? ପ୍ରତିଦିନ କ୍ଷୁଧା ହେବ ଓ ପ୍ରତିଦିନ ଖାଇବାକୁ ପଡ଼ିବ ।

ମୂଷା କହିଲା, ତାହାହେଲେ ଦୟାକରି ଆଜି ମୋତେ ଛାଡ଼ିଦିଅ । ପ୍ରତିବଦଳରେ ମୁଁ ତୁମକୁ ପ୍ରତିଦିନ ମାଂସ ଖାଇବାକୁ ଦେବି ।

ବିରାଡ଼ି କହିଲା, ତାହାହେଲେ ମୁଁ ତୁମକୁ ଆଜି ଛାଡ଼ି ଦେଉଛି । କିନ୍ତୁ ଯେଉଁଦିନ ମୋତେ ଖାଇବାକୁ ଦେବନାହିଁ, ସେ ଦିନ ମୋ' ହାବୁଡ଼ରୁ ରକ୍ଷା ପାଇବ ନାହିଁ ।

ଏ ପ୍ରକାର ସର୍ତ୍ତରେ ବିରାଡ଼ି ମୂଷାକୁ ଛାଡ଼ିଦେଲା ।

ମୂଷା ତାର ପ୍ରତିଶ୍ରୁତି ପାଳନ କରି ପ୍ରତିଦିନ ବୋଧିସତ୍ତ୍ୱ ତାକୁ ଦେଉଥିବା ମାଂସକୁ ଦୁଇଭାଗ କରି, ଗୋଟିଏ ଭାଗ ବିରାଡ଼ିକୁ ଦେବାକୁ ଲାଗିଲା ।

କିଛିଦିନ ପରେ ମାଈମୂଷାଟି ଆଉ ଏକ ବିରାଡ଼ି ହାବୁଡ଼ରେ ପଡ଼ିଲା । ମୂଷାଟି ପ୍ରଥମ ଥର ପରି ଦ୍ୱିତୀୟ ବିରାଡ଼ି ଆଗରେ ସର୍ତ୍ତ କରି ମୃତ୍ୟୁ ମୁଖରୁ ରକ୍ଷା ପାଇଗଲା । ଏହିପରି ଭାବରେ ବୋଧିସତ୍ତ୍ୱ ତାକୁ ଯେଉଁ ମାଂସ ଖାଇବାକୁ ଦେଉଥିଲେ ତାହା ତିନି ଭାଗ ହେଲା ।

କିନ୍ତୁ ତଥାପି ରକ୍ଷା ନାହିଁ । ମାଈ ମୂଷାଟି ଏହାପରେ ତୃତୀୟ ଓ ଚତୁର୍ଥ ବିରାଡ଼ି ହାବୁଡ଼ରେ ପଡ଼ିଲା ଓ ସେମାନଙ୍କୁ ପ୍ରତିଦିନ ମାଂସ ଖାଇବାକୁ ଦେବ ବୋଲି ପ୍ରତିଶ୍ରୁତି ଦେଇ ମୃତ୍ୟୁ ମୁଖରୁ ଉଦ୍ଧାର ପାଇଲା ।

ଜଣକର ଖାଇବା ମାଂସ ଏବେ ପାଞ୍ଚ ଭାଗ ହେଲା । ଉପଯୁକ୍ତ ଆଧାର ନପାଇ ମୂଷାର ଦେହ ଦିନକୁ ଦିନ କ୍ଷୀଣ ହେବାକୁ ଲାଗିଲା । ଅବଶେଷରେ ତା' ଦେହରେ ହାଡ଼ ଓ ଚମ ବ୍ୟତୀତ ଆଉ କିଛି ରହିଲା ନାହିଁ ।

ମୂଷିକର ଏ କରୁଣ ଅବସ୍ଥା ଦେଖି ବୋଧିସତ୍ତ୍ୱ ଏପରି ହେବାର କାରଣ ପଚାରିଲେ । ଏହାପରେ ମୂଷିକଟି ଗୋଟି ଗୋଟି କରି ସବୁକଥା ବୁଝାଇ କହିଲା । ବୋଧିସତ୍ତ୍ୱ ବର୍ତ୍ତମାନ ବୁଝି ପାରିଲେ ଯେ, ଖାଦ୍ୟାଭାବ ହିଁ ମୂଷିକକୁ ଏହି କରୁଣ ଅବସ୍ଥାରେ ପହୁଞ୍ଚାଇ ଦେଇଛି । ସେ ମୂଷିକକୁ ଅଭୟ ପ୍ରଦାନ କରି କହିଲେ, ଏଥର ତୁମର ଆଉ ଭାବିବାର କିଛି ନାହିଁ । ତୁମକୁ ବିପଦମୁକ୍ତ କରିବାର ସମସ୍ତ ବ୍ୟବସ୍ଥା ଅବଲମ୍ବନ କରୁଛି । କିନ୍ତୁ ଏକଥା ମୋତେ ଆଗରୁ ଜଣାଇ ଦେଇଥିଲେ, ଖୁବ୍ ଭଲ ହୋଇଥାନ୍ତା ।

ବୋଧିସତ୍ତ୍ୱ ଗୋଟିଏ ସ୍ଫଟିକ ପ୍ରସ୍ତର ସଂଗ୍ରହ କରି ତାରି ଭିତରେ ମୂଷିକ ରହିବାଭଳି ଗୋଟିଏ ଗର୍ତ୍ତ ଖୋଳିଦେଲେ । ତାପରେ ମୂଷିକକୁ ତାରି ଭିତରେ ପଶିବାକୁ କହି ଉପଦେଶ ଦେଲେ, ଏଥର ତୁମେ ବିପଦମୁକ୍ତ ହେଲ । ତା' ଭିତରେ ଥିବା ପର୍ଯ୍ୟନ୍ତ କେହି ତୁମର କିଛି କରି ପାରିବେ ନାହିଁ । ବିରାଡ଼ିମାନେ ତୁମ ପାଖକୁ ଆସିଲେ ଧମକ ଦେବ ।

ମୂଷିକ ବୋଧିସତ୍ତ୍ୱଙ୍କ ଉପଦେଶକ୍ରମେ ସ୍ଫଟିକ ଗର୍ତ୍ତରେ ରହିଲା । ସ୍ଫଟିକର ଉପର ଅଂଶରୁ ବିରାଡ଼ିର ପ୍ରତିକୃତି ସ୍ପଷ୍ଟ ଦେଖା ଯାଉଥାଏ । ପ୍ରଥମ ବିରାଡ଼ିଟି ମୂଷିକ ପାଖକୁ ଆସି ମାଂସ ଖାଇବାକୁ ମାଗିଲା ।

ମୂଷିକ ବୋଧିସତ୍ତ୍ୱଙ୍କ କଥା ସ୍ମରଣ କରି ସ୍ଫଟିକ ଭିତରୁ କର୍କଶ ଗଳାରେ କହିଲା, ପଳା ଏଠୁ କହୁଛି । ମୁଁ ତୋତେ ଖାଇବାକୁ ଦେବି କାହିଁକି ? ତୋତେ ଯଦି ଭୋକ ହେଉଛି, ତୋ' ପୁଅ ଝିଅଙ୍କୁ ମାରି ଖାଉନୁ ।

ଏହାଶୁଣି ବିରାଡ଼ି ଖୁବ୍ ରାଗିଗଲା । ସେ ମୂଷିକକୁ ଖାଇଯିବ ବୋଲି ତା' ଉପରକୁ ଲମ୍ଫ ପ୍ରଦାନ କଲା । କିନ୍ତୁ ହାୟ, ସ୍ଫଟିକ ଦେହରେ ଖୁବ୍ ଜୋରରେ ଧକ୍କା ଖାଇ ତା' ହାଡ଼ିର ପଞ୍ଜରହାଡ ସବୁ ଖଣ୍ଡ ଖଣ୍ଡ ହୋଇଗଲା ଓ ଆଖି ଡୋଳା ଦୁଇଟି ମୁହଁ ପାଖରୁ ଛିଟିକି ପଡ଼ିଲା । ମଲା ବିରାଡ଼ିର ଦେହ ସ୍ଫଟିକ ଉପରୁ ତଳକୁ ଖସିଗଲା ।

ଏହିପରି ଭାବରେ ଆଉ ତିନୋଟି ବିରାଡ଼ି ସେମାନଙ୍କ ଅଂଶ ଦାବୀ କରିବାକୁ ଆସି ପ୍ରଥମ ବିରାଡ଼ିର ଦଶା ଭୋଗ କଲେ ।

ବୋଧିସତ୍ତ୍ୱଙ୍କ ଦୟାରୁ ମାଈ ମୂଷାଟି ବିପଦ ମୁହଁରୁ ବର୍ତ୍ତି ଯାଇ ଥିବାରୁ କୃତଜ୍ଞତା ପ୍ରକାଶ କଲା ଓ ଦିନକୁ ଗୋଟିଏ ପରିବର୍ତ୍ତେ ଦୁଇ ତିନୋଟି କରି ସ୍ୱର୍ଣ୍ଣମୁଦ୍ରା ଆଣି ବୋଧିସତ୍ତ୍ୱଙ୍କ ହସ୍ତରେ ଅର୍ପଣ କଲା । ଏହିପରି ଭାବରେ ବଣିକ ପୋତି ଯାଇଥିବା ସମସ୍ତ ଗୁପ୍ତଧନ ସେ ବୋଧିସତ୍ତ୍ୱଙ୍କୁ ସମର୍ପଣ କରିଥିଲା ।

ଏହାପରେ ଆଜୀବନ ସେମାନେ ପରସ୍ପରର କୃତଜ୍ଞତା ବନ୍ଧନରେ ଆବଦ୍ଧ ହୋଇ ସ୍ନେହ ଓ ଶ୍ରଦ୍ଧାର ସହିତ ଜୀବନ-ଯାପନ କରିଥିଲେ ।

(ବବ୍ବୁ ଜାତକ)



# କୃପଣ ଇଲ୍ଲିସ ଦାନୀ ପାଲଟିଲା



ବହୁ ପୂର୍ବ କାଳରେ, ବ୍ରହ୍ମଦତ୍ତ ବାରଣସୀରେ ରାଜୁତି କଲାବେଳେ, ଇଲ୍ଲିସ ନାମକ ଜଣେ ଶ୍ରେଷ୍ଠୀ ସେଇଠି ବାସ କରୁଥିଲା । ସେ ବିପୁଳ ସମ୍ପତ୍ତିର ଅଧିକାରୀ ଥିଲେହେଁ ଛୋଟା, କୁଜା, ଟେରା ଓ ସର୍ବୋପରି ଅତୀବ କୃପଣ ପ୍ରକୃତିର ଥିଲା । ତାର କାହାରି ଉପରେ, ଏପରିକି ଈଶ୍ୱରଙ୍କ ଠାରେ ମଧ୍ୟ ବିଶ୍ୱାସ ନ ଥିଲା । ସେ କାହାକୁ କେବେ ହାତଟେକି କିଛି ଦାନ କରୁ ନଥିଲା କି ନିଜେ ମଧ୍ୟ କିଛି ଖର୍ଚ୍ଚ କରୁ ନଥିଲା ।

କିନ୍ତୁ ଇଲ୍ଲିସର ସପ୍ତ ପୁରୁଷ ଅତ୍ୟନ୍ତ ଦାନଶୀଳ ଥିଲେ । ସେମାନେ ଧର୍ମଶାଳାମାନ ନିର୍ମାଣ କରି ଅନେକ ଅସହାୟ ଲୋକଙ୍କୁ ଆଶ୍ରୟ ପ୍ରଦାନ କରିଥିଲେ । କିନ୍ତୁ ଇଲ୍ଲିସ ଗୃହକର୍ତ୍ତା ହେବା ପରେ ଅସହାୟ ଲୋକଙ୍କୁ ଆଶ୍ରୟସ୍ଥଳୀରୁ ବିତାଡ଼ନ କରିଥିଲା ଓ ଧର୍ମଶାଳା ସବୁ ଧ୍ୱଂସ କରି ଦେଇଥିଲା ।

ଦିନେ ଇଲ୍ଲିସ ରାଜଦର୍ଶନ କରି ସାରିବା ପରେ ରାଜ ପ୍ରାସାଦରୁ ଫେରି ଆସୁଛି, ଦେଖିଲା, ଗୋଟିଏ ପଥଶ୍ରାନ୍ତ ପଥିକ ଜଣକର ପିଣ୍ଡା ଉପରେ ବସି ମାଟି ସରରେ ତାଡ଼ି ପିଉଛି ଏବଂ ତା' ସଙ୍ଗେ ସଙ୍ଗେ ଶୁଖୁଆ ପୋଡା ଖଣ୍ଡେ ଖଣ୍ଡେ ପାଟିରେ ପକାଉଛି । ଏହା ଦେଖି ତାର ମଧ୍ୟ ତାଡ଼ି ପିଇବାକୁ ଇଚ୍ଛା ହେଲା । କିନ୍ତୁ ସଙ୍ଗେ ସଙ୍ଗେ ମନେ ପଡ଼ିଗଲା, "ଯଦି ମୁଁ ତାଡ଼ି ପିଇବି, ତେବେ ଅନ୍ୟମାନେ ମଧ୍ୟ ମୋ' ସାଙ୍ଗରେ ପିଇବେ । ତାର ଅର୍ଥ ହେଲା, ଆହୁରି ଖର୍ଚ୍ଚ ।" ଏହା ଭାବି, ତାଡ଼ି ପିଇବାର ଇଚ୍ଛାକୁ ଅବଦମିତ ଅବସ୍ଥାରେ ରଖି ସେ ଚାଲିଗଲା ।

କିନ୍ତୁ କାଳକ୍ରମେ ଏହି ଅବଦମିତ ଇଛାର ଶିକାର ହୋଇ ସେ ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥା ଧାରଣ କଲା । ମନେହେଲା, ସତେ ଅବା ଅକାଳବାର୍ଦ୍ଧକ୍ୟରେ ସେ ଉପନୀତ ହୋଇଛି ।

ଦିନେ ସେ ଅବଶ ହୋଇ ବିଶ୍ରାମ କକ୍ଷରେ ଶୋଇ ରହିଛି, ତାର ସ୍ତ୍ରୀ ତା' ପାଖକୁ ଆସି, ପିଠିରେ ହାତ ବୁଲାଇ ପ୍ରଶ୍ନକଲା, ତୁମର କଣ ହୋଇଛି କୁହ ତ ? ତୁମେ ଏମିତି ଶୁଖିଲା ଦେଖାଯାଉଛ ଯେ !

ଇଲ୍ଲିସ ଅନନ୍ୟୋପାୟ ହୋଇ ସବୁକଥା ଜଣାଇ ଦେଲା ଓ ନିଜର ତାଡ଼ି ପିଇବାର ଇଚ୍ଛା ପ୍ରକଟ କଲା ।

ଇଲ୍ଲିସର ପତ୍ନୀ ସବୁକଥା ଶୁଣିବା ପରେ କହିଲା, ଏଇଥି ପାଇଁ ଏତେ କଥା ? ମୁଁ ତୁମପାଇଁ ଘରେ ତାଡ଼ି ତିଆରି କରାଇ ଦେବି ।

ଇଲ୍ଲିସ ଏହାଶୁଣି ଅତିଷ୍ଠ ହୋଇ ପଡ଼ିଲା । କହିଲା, ନାନା, ଘରେ ତାଡ଼ି ତିଆରି କରିବା ହେବ ନାହିଁ । ଘର ଭିତରେ ତାଡ଼ି ପିଇବା ଅସମ୍ଭବ । ଅନ୍ୟମାନେ ଏକଥା ଦେଖିଲେ ତାଡ଼ି ନପିଇ ଛାଡ଼ିବେ ନାହିଁ । ସେ ଏହାପରେ ନିଜର ଚାକର ହାତରେ ଅଳ୍ପକିଛି ପଇସା ଦେଇ, ତାଡ଼ି ଆଣିବାକୁ ପଠାଇ ଦେଲା । ଚାକର ତାଡ଼ି ନେଇ ଆସିବା ପରେ ତାଡ଼ିପାତ୍ରକୁ ନେଇ ନଈକୂଳର ଏକ ନିର୍ଦ୍ଦିଷ୍ଟ ବୁଦାମୂଳେ ପହଞ୍ଚାଇ ଦେବାକୁ ଆଦେଶ ଦେଲା । ତା' ପରେ ସେ ବୁଦାମୂଳରେ ପହଞ୍ଚିବା ମାତ୍ରେ ଚାକରକୁ ସେ ସ୍ଥାନ ଛାଡ଼ି ଚାଲିଯିବାକୁ କହିଲା ଓ ନିଜେ ଏକା ଏକା ମାଟିପାତ୍ରରେ ତାଡ଼ି ଭର୍ତ୍ତିକରି ପିଇଲା ।

ଇଲ୍ଲିସର ପିତା ଜଣେ ଅତ୍ୟନ୍ତ ଦାନୀ ଓ ପୁଣ୍ୟାତ୍ମା ଥିଲେ । ତେଣୁ ମୃତ୍ୟୁ ପରେ ତାଙ୍କୁ ଦେବଲୋକରେ ଇନ୍ଦ୍ରପଦ ମିଳିଥିଲା । ଇଲ୍ଲିସ ନିର୍ଜନ ନଦୀ କୂଳରେ ମଦ ପିଉଥିଲା ବେଳେ ସେ ମର୍ତ୍ତ୍ୟ ଲୋକକୁ ଆସି ନିଜ ପୂର୍ବାର୍ଜିତ ସମ୍ପତ୍ତିର ତଦାରଖ କରୁଥିଲେ । ସେ ଦେଖିବାକୁ ପାଇଲେ ଯେ, ତାଙ୍କରି ନିର୍ମିତ ଧର୍ମଶାଳା ସବୁ ନଷ୍ଟ କରି ଦିଆଯାଇଛି ଏବଂ ନିରାଶ୍ରୟମାନଙ୍କୁ ନିର୍ଯ୍ୟାତନା ଦେଇ ବାହାର କରି ଦିଆଯାଇଛି । ତାଙ୍କରି ସନ୍ତାନ ଇଲ୍ଲିସ, ଦାନପୁଣ୍ୟ କରିବା ତ ଦୂରର କଥା, କୃପଣତା ବଶତଃ ସବୁ ସମ୍ପଦ ସାଇତି ରଖି ଘରର ସମସ୍ତଙ୍କ ପ୍ରତି ଅବହେଳା ପ୍ରଦର୍ଶନ କରୁଛି । ଘରର ପୂର୍ବ ପରମ୍ପରା ଆଉ ନାହିଁ । ଘରର ଚାକର ବାକରମାନେ ସେ ତାଡ଼ି ପିଉଥିବାର ଦେଖିଲେ ଲୋଭ କରି ପାରନ୍ତି, ଏଇଆ ଭାବି ନିର୍ଜନ ନଈକୂଳରେ ଏକା ଏକା ତାଡ଼ି ପିଉଛି ।

ଇଲ୍ଲିସର ପିତା ଏ ସମସ୍ତ ଦୃଶ୍ୟ ଦେଖି ଅତ୍ୟନ୍ତ ଦୁଃଖ ପ୍ରକାଶ କଲେ । ସେ ନିଜ ପୁତ୍ରକୁ ସଂଶୋଧନ କରିବାର ଇଚ୍ଛା ପୋଷଣ କଲେ ; ତେଣୁ ମାୟା ବଳରେ ଇଲ୍ଲିସର ରୂପ ଧାରଣ କରି ନଗର ମଧ୍ୟରେ ପ୍ରବେଶ ହେଲେ । ସେ ସେହି ରୂପରେ ପ୍ରାସାଦ ପ୍ରହରୀ ସମ୍ମୁଖରେ ଛିଡା ହୋଇ ରାଜାଙ୍କୁ ସାକ୍ଷାତ୍ କରିବା ଅଭିଳାଷ ଜଣାଇଲେ । ପ୍ରହରୀ ଏହାପରେ ରାଜାଙ୍କ ପାଖରୁ ଅନୁମତି ଆଣି, ତାଙ୍କୁ ରାଜାଙ୍କ ନିକଟରେ ପହଞ୍ଚାଇ ଦେଲା ।

ଏହି ଅସମୟରେ ଆସିବାର କାରଣ କଣ ଇଲ୍ଲିସ ? ରାଜା ପ୍ରଶ୍ନକଲେ ।

ମହାଭାଗ । ମୋ' ଘରେ ଅଶୀ କୋଟି ସ୍ୱର୍ଣ୍ଣମୁଦ୍ରା ଅଛି । ମୋର ପ୍ରାର୍ଥନା, ଆପଣ ସେ ସବୁ ସମ୍ପଦ ରାଜକୋଷକୁ ନେଇ ଆସନ୍ତୁ । ଇଲ୍ଲିସରୂପୀ ଇନ୍ଦ୍ର ପ୍ରକାଶ କଲେ ।

କିନ୍ତୁ ଧନ ମୋର ଏବେ କଣ ହେବ ? ରାଜକୋଷରେ ବିପୁଳ ସମ୍ପଦ ରହିଛି । ତୁମ ଧନ ତୁମ ପାଖରେ ଥାଉ । ରାଜା ଉତ୍ତର ଦେଲେ ।

ତାହାହେଲେ ଏ ଧନ ସମ୍ପଦ ସର୍ବସାଧାରଣରେ ବାଣ୍ଟି-ଦେବା ସକାଶେ ମୋତେ ଅନୁମତି ପ୍ରଦାନ କରନ୍ତୁ । ଛଦ୍ମରୂପୀ ଇଲ୍ଲିସ ପ୍ରାର୍ଥନା କଲେ ।

ସେଥିରେ ମୋର ଆପତ୍ତି କରିବାର କଣ ଅଛି ? ତୁମେ ତାହା କରିପାର । ରାଜା ଉତ୍ତର ଦେଲେ ।

ଏହାପରେ ଛଦ୍ମବେଶୀ ଇଲ୍ଲିସ ରାଜାଙ୍କୁ ଅଭିବାଦନ ଜ୍ଞାପନ କରି ଫେରିଗଲେ ଓ ସେହି ରୂପରେ ନିଜ ଘରେ ପ୍ରବେଶ କଲେ । ଆଶ୍ଚର୍ଯ୍ୟର କଥା, ଇଲ୍ଲିସର ପତ୍ନୀ, ପରିଚାରକ, ଦାସଦାସୀ କେହିହେଲେ ତାଙ୍କ ରୂପରେ ସନ୍ଦେହ ପ୍ରକାଶ କଲେ ନାହିଁ । ସେ ଜଣେ ଚାକରକୁ ଡାକି କହିଲେ, ତୁ ଦ୍ୱାର ପାଖରେ ଜଗିଥିବୁ । ମୋ' ପରି କେହି ଲୋକ ଯଦି ଘର ଭିତରକୁ ପଶିବାକୁ ଚାହେଁ, ତାକୁ ଧକ୍କାମାରି ତଡ଼ିଦେବୁ ।

ଚାକରକୁ ଏପରି ଭାବରେ ସତର୍କ କରାଇ ଦେବା ପରେ, ଉପର ମହଲାକୁ ଲମ୍ବି ଯାଇଥିବା ଗୋଟାକ ପରେ ଗୋଟିଏ ସିଡ଼ି ଚଢ଼ି ଅତିକ୍ରମ କଲେ ଏବଂ ସେଇଠି ପଡ଼ିଥିବା ଏକ ଦିବ୍ୟ ଆସନ ଉପରେ ବସି ଇଲ୍ଲିସର ସ୍ତ୍ରୀକୁ ଡକାଇ ପଠାଇଲେ । ଇଲ୍ଲିସର ସ୍ତ୍ରୀ ସାମନାରେ ଉପସ୍ଥିତ ହେବା ଦେଖି, ସେ ହସି ହସି କହିଲେ, ଆମେ ଏଥର ଦାନପୁଣ୍ୟ କରିବା ।

ଏହା ଶୁଣି ଇଲ୍ଲିସର ପତ୍ନୀ ତଥା ଘରର ଅନ୍ୟାନ୍ୟ ଚାକର-ମାନେ ଭାବିଲେ, ବୋଧହୁଏ ଅନେକ ଦିନରୁ ତାଙ୍କର ଦାନପୁଣ୍ୟ କରିବାର ଇଚ୍ଛା ଥିଲା । ବର୍ତ୍ତମାନ ଟିକିଏ ତାଡ଼ି ଖାଇଦେବା ପରେ ସେ କଥା ଅତି ସ୍ପଷ୍ଟ ଭାବରେ ପ୍ରକାଶ କରି ପାରିଲେ । ଇଲ୍ଲିସର ପତ୍ନୀ ସଙ୍ଗେ ସଙ୍ଗେ ଏହି ଦାନପୁଣ୍ୟ କଥାରେ ସମ୍ମତି ପ୍ରକାଶ କଲା ।

ଇଲ୍ଲିସ ସହରର ଘୋଷଣାକାରୀକୁ ଡକାଇ ପଠାଇଲେ ଓ କହିଲେ, ସହରରେ ଢେଙ୍ଗୁରା ଦେଇ ଜଣାଇ ଦିଅ ଯେ, ଇଲ୍ଲିସ ଆଜି ଦାନ କରୁଛନ୍ତି । ସେ ସୁବର୍ଣ୍ଣ, ରୌପ୍ୟ ଓ ହୀରକ ଆଦି ବହୁମୂଲ୍ୟ ଜିନିଷ ଦାନ କରିବେ । ଯାହାର ଯାହା ଇଚ୍ଛା, ଇଲ୍ଲିସ ଘରକୁ ଯାଇ ନେଇ ଆସନ୍ତୁ ।

ଢେଙ୍ଗୁରା ଶୁଣି ଅସଂଖ୍ୟ ଲୋକ ଆସି ଇଲ୍ଲିସ ଘରେ ରୁଣ୍ଡ ହେଲେ ।

ଇଲ୍ଲିସରୂପୀ ଇନ୍ଦ୍ର ଭଣ୍ଡାର ଘର ଖୋଲି ଦେଇ କହିଲେ, ଯାହାର ଯାହା ଇଚ୍ଛା ହେଉଛି, ସଙ୍ଗରେ ନେଇ ଚାଲିଯାଅ । ଏହା ମୋର ଆଜିପାଇଁ ତୁମକୁ ଦାନ ।

ଲୋକମାନେ ମହା ଆନନ୍ଦରେ ଇଲ୍ଲିସର ଭଣ୍ଡାର ଘର ଭିତରେ ପଶି ଯେତେ ଇଚ୍ଛା ଯେତେ ଧନ ବୋହିବାକୁ ଲାଗିଲେ । ବସ୍ତା, ଡାଲ, କଳସ ଯିଏ ଯାହା ସଙ୍ଗରେ ଆଣିଥିଲା, ତହିଁରେ ଧନ ଭର୍ତ୍ତିକରି ନେଲା ।

ଏହି ଲୋକମାନଙ୍କ ଭିତରେ ଜଣେ ଦୂରାଗତ ଗ୍ରାମ୍ୟ ଅଧିବାସୀ ଥିଲା । ସେ ଇଲ୍ଲିସର ଶଗଡରେ ଇଲ୍ଲିସର ବଳଦ ଯୋଚି, ଶଗଡରେ ଇଲ୍ଲିସ ଗୃହର ଧନ ସମ୍ପଦ ଭର୍ତ୍ତିକରି ମହା-ଆନନ୍ଦରେ ନିଜ ଘରକୁ ଫେରି ଯାଉଥିଲା । ପ୍ରକୃତ ଇଲ୍ଲିସ ନଈ କୂଳିଆ ବୁଦା ମୂଳେ ବସି ଯେଉଁଠି ମଦ ଖାଉଥିଲା, ସେହି ରାସ୍ତାରେ ଚାଲି ଯାଉ ଯାଉ ସେ ଗୀତ ଛଳରେ ଇଲ୍ଲିସର ପ୍ରଶଂସାସୂଚକ ଗୀତ ଗାଇବାକୁ ଲାଗିଲା । ସେ ଗୀତର ଉଦ୍ଦେଶ୍ୟ ହେଲା, ହେ ଇଲ୍ଲିସ । ତୁମେ ଖୁବ୍ ଦୟାଳୁ । ତୁମେ ଦୀର୍ଘଜୀବୀ ହୁଅ । ତୁମରି ଦୟାରୁ ମୋର ଜୀବନସାରା ବିନା ପରିଶ୍ରମରେ କଟିଯିବ । ଏ ବଳଦ, ଏ ଶଗଡ, ଶଗଡଭର୍ତ୍ତି ଜିନିଷ ସବୁ ତୁମର । ଏହା ମୋର ପିତୃଅର୍ଜିତ ସମ୍ପତ୍ତି ନୁହେଁ । ତୁମରି ଦୟାରୁ ସବୁ ପାଇଲି ।

ଇଲ୍ଲିସ ବୁଦାମୂଳେ ବସି ତାଡ଼ି ପିଉ ପିଉ ସବୁ ଶୁଣିଲା । ସେ ଭୟରେ ଶିହରି ଉଠିଲା । ଭାବିଲା, ଲୋକଟି ବାରମ୍ବାର ମୋର ନାମ ଉଚ୍ଚାରଣ କରୁଛି କାହିଁକି ? ରାଜା କଣ ମୋରି ଧନ ସମ୍ପଦକୁ ସର୍ବସାଧାରଣଙ୍କ ଭିତରେ ବାଣ୍ଟି ଦେଇଛନ୍ତି ? ଏହା

ଭାବି ଆତଙ୍କିତ ହୋଇ ସେ ବୁଦାମୂଳରୁ ବାହାରି ଆସିଲା ଏବଂ ଦେଖିଲା, ଅଚିହ୍ନା ଲୋକଟିଏ ତାରି ବଳଦକୁ ତାରି ଶଗଡରେ ଯୋଚି, ତା' ନିଜର ଧନ ସମ୍ପଦ ବୋହିନେଇ ଚାଲି ଯାଉଛି । ସେ ଆଉ ଧୈର୍ଯ୍ୟ ଧରି ପାରିଲା ନାହିଁ । ହଠାତ୍ ଆସି ଶଗଡ ଜୁଆଳୀ ଧରି ପକାଇଲା ଓ ଶଗଡ ବନ୍ଦ କଲା । ଅଚିହ୍ନା ଲୋକକୁ ପ୍ରଶ୍ନକଲା, ଏ ଶଗଡ, ଏ ବଳଦ ଆଉ ଶଗଡରେ ଭର୍ତ୍ତି ହୋଇ-ଥିବା ଧନ ସମ୍ପଦ ସବୁ ମୋର । ଏସବୁ ନେଇ ତୁ କୁଆଡେ ପଳାଇ ଯାଉଛୁ ?

ଲୋକଟି ଏହାଶୁଣି ସଙ୍ଗେ ସଙ୍ଗେ ଶଗଡରୁ ଡେଇଁ ପଡିଲା ଓ ଇଲ୍ଲିସକୁ ଗଳା ଧକ୍କା ଦେଇ କହିଲା, ଆଜି ଇଲ୍ଲିସ ସର୍ବ-ସାଧାରଣଙ୍କ ଭିତରେ ତାଙ୍କର ଧନ ସମ୍ପଦ ବିତରଣ କରୁଛନ୍ତି । ତୋର ଇଚ୍ଛାହେଲେ ତାଙ୍କ ପାଖକୁ ଯାଇ ଯାହାଇଚ୍ଛା ମାଗି ଆଣ । ମୋ' ସଙ୍ଗେ ବକର ବକର ଲଗାନା ।

ଇଲ୍ଲିସ ଆଘାତ ପାଇ ସମ୍ଭାଳି ନ ପାରି ମାଟି ଉପରେ କଚାଡି ହୋଇ ପଡିଲା । ସେ ସେହିଭଳି କ୍ଷତ ବିକ୍ଷତ ଅବସ୍ଥାରେ ପଡି ରହିଛି, ଅଚିହ୍ନା ଲୋକଟି ଶଗଡ ନେଇ ଚାଲିଗଲା । ଇଲ୍ଲିସ କୌଣସି ମତେ ନିଜକୁ ସଜାଡି ଝାଳନାଳ ହୋଇ ଶଗଡ ପଛରେ ପୁଣି ଗୋଡାଇଲା ଓ ଶଗଡକୁ ପୁଣି ଅଟକାଇ ଦେଲା । ଏଥର ଲୋକଟି ଶଗଡ ଉପରୁ ଓହ୍ଲାଇ ଆସି ଇଲ୍ଲିସକୁ ବହୁତ ମାଡ ମାରିଲା । ବିଧା, ଚାପୁଡା, ମୁଥରେ ତା ଦେହସାରା ଭର୍ତ୍ତି କରିଦେଲା । ବିଚରା ଇଲ୍ଲିସ ରାସ୍ତା ଉପରେ ଅସହ୍ୟ ଯନ୍ତ୍ରଣା ଭୋଗକରି ପଡିରହିଲା ।

ଇଲ୍ଲିସ ଏହାପରେ ଘରକୁ ଯାଇ ପ୍ରକୃତି ଅବସ୍ଥା ଦେଖିବ ବୋଲି ବିଚାର କରି ଘରମୁହାଁ ହେଲା ।

କିନ୍ତୁ ଏ କଣ ସେ ଦେଖୁଛି ? ଘର ମୁହଁରେ ଅନେକ ଲୋକ ରୁଣ୍ଡ ହୋଇଛନ୍ତି । ଘର ଭିତରେ ପଶି ଯିଏ ଯାହା ପାଇଲା, ସଙ୍ଗରେ ନେଇ ଯାଉଛି । ସବୁ ଲୋକ ତାରି ଭଣ୍ଡାର ଘର ଶୂନ୍ୟ କରିବାରେ ବ୍ୟସ୍ତ । ସେ ଜଣେ ଦି'ଜଣର ହାତ ଧରି ଅଟକାଇଲା ଓ ପ୍ରଶ୍ନକଲା, ଏ କଣ କରୁଛ ? ରାଜା କଣ ମୋର ସର୍ବନାଶ କରିବାକୁ ତୁମ୍ଭମାନଙ୍କୁ ଏଠାକୁ ପଠାଇ ଅଛନ୍ତି ? କିନ୍ତୁ ସେତେ-ବେଳେ ଇଲ୍ଲିସର କଥା ଶୁଣୁଛି କିଏ ? ସେ ଯାହାକୁ ଯାଇ ନିବାରଣ କଲା, ତା' ପାଖରୁ କେବଳ ଗାଳି ମାଡ ପାଇଲା । ସେହି କ୍ଷତ ବିକ୍ଷତ ରକ୍ତାକ୍ତ ଦେହରେ ଇଲ୍ଲିସ ଘର ଭିତରକୁ ପଶିବାକୁ ଚେଷ୍ଟାକଲା ; କିନ୍ତୁ ପହରୀ ତାକୁ ଘର ଭିତରକୁ ନ ଛାଡି ପ୍ରହାର ଦେଇ ଓ ଗଳାଧକ୍କା ମାରି ଦୂରକୁ ଠେଲିଦେଲା ।

ଶ୍ରାନ୍ତକ୍ଲାନ୍ତ, ଉପାୟହୀନ ଇଲ୍ଲିସ ଶେଷରେ ସ୍ଥିରକଲା, ରାଜାଙ୍କୁ ଯାଇ ଗୁହାରି କରିବ ଓ ତା' ଦାବୀ ହାସଲ କରିବ । ସେ

ପ୍ରାଣ ବିକଳରେ ରାଜାଙ୍କ ପାଖକୁ ଯାଇ ଜଣାଇଲା, ମହାରାଜ ! ମୁଁ କେଉଁ ଅପରାଧ କଲି ଯେ ମୋତେ ଏତେବଡ଼ ଦଣ୍ଡ ଦେଲେ ? ମୋ ଘର ଲୁଟି କରାଇବାର କାରଣ କଣ ?

ରାଜା କହିଲେ, କାହିଁ, ମୁଁ ତ କିଛି କରିନାହିଁ ? କିଛି ସମୟ ପୂର୍ବରୁ ତୁମେ ନିଜେ ଆସି ଜଣାଇଲ ଯେ, ମୁଁ ଯଦି ତୁମର ଧନ ସମ୍ପଦ ଗ୍ରହଣ ନ କରେ, ତାହାହେଲେ ତାହା ଜନସାଧାରଣଙ୍କ ନିକଟରେ ବିତରଣ କରିଦେବ । ମୁଁ ତହିଁରେ ଆପତ୍ତି ନ କରିବାରୁ, ତେଣ୍ଡରା ପିଟାଇ ସେ କଥା ସହରସାରା ଘୋଷଣା କରାଇଲ । ବର୍ତ୍ତମାନ ମୋତେ ଏକଥା ପଚାରୁଛ କାହିଁକି ?

ଇଲ୍ଲିସ ଆକୁଳ କଣ୍ଠରେ କହିଲା, ନାଁ ମହାରାଜ ନାଁ ! ମୁଁ କେବେବି ଏ ପ୍ରସ୍ତାବ ନେଇ ଆପଣଙ୍କ ପାଖକୁ ଆସି ନଥିଲି । ତା'ଛଡ଼ା ଆପଣ ମୋତେ ଖୁବ୍ ଭଲ ରୂପେ ଜାଣନ୍ତି । ମୁଁ ଧନ ସମ୍ପଦ ତ ଅଲଗା କଥା, ଟୋପେ ତେଲ ବି' କାହାକୁ ଦେଇନାହିଁ । ମୋର ସର୍ବସ୍ୱ ଦାନ କରିବାକୁ ଘୋଷଣା କରନ୍ତି କାହିଁକି ? ନିଶ୍ଚୟ ମୋ' ବ୍ୟତୀତ ଅନ୍ୟ କେହି ଆସି, ଆପଣଙ୍କୁ ସେ ସବୁ ଅଦ୍ଭୁତ କଥା କହି, ମୋର ସର୍ବନାଶ କରିବାକୁ ଚକ୍ରାନ୍ତ କରିଛି । ଆପଣ ଦୟାକରି ସେହି ଲୋକକୁ ଡକାଇ ପଠାନ୍ତୁ ଓ ସତ୍ୟା-ସତ୍ୟର ସନ୍ଧାନ ନିଅନ୍ତୁ ।

ରାଜା ଜଣେ କର୍ମଚାରୀ ପଠାଇ ଛଦ୍ମବେଶୀ ଇଲ୍ଲିସଙ୍କୁ ପାଖକୁ ଡକାଇ ଆଣିଲେ ।

କିନ୍ତୁ ଏକଣ ? ଏକା ରୂପ, ଏକାବର୍ଣ୍ଣ, ଏକ ଉଚ୍ଚତାର ଦୁଇଜଣ ଇଲ୍ଲିସ ! ରାଜା କିମ୍ବା ରାଜକର୍ମଚାରୀମାନେ ପ୍ରକୃତ ଇଲ୍ଲିସ କିଏ ଚିହ୍ନି ନ ପାରି ଆଶ୍ଚର୍ଯ୍ୟ ହୋଇଗଲେ । ଇତ୍ୟବସରରେ କୃପଣ ଇଲ୍ଲିସ ପାଟିକଲା, ମହାରାଜ ! ମୁଁ ହେଉଛି ପ୍ରକୃତ ଇଲ୍ଲିସ । ଏହି ଲୋକଟି ଛଦ୍ମବେଶୀ । ଇଲ୍ଲିସ ରୂପୀ ଇନ୍ଦ୍ର ମଧ୍ୟ ସେହି କଥା କହିଲେ ।

ରାଜା ପ୍ରକୃତ ଇଲ୍ଲିସଙ୍କୁ ଚିହ୍ନିବାରେ ନିଜର ଅକ୍ଷମତା ପ୍ରକାଶ କରି କହିଲେ, ତେବେ ପ୍ରକୃତ ଇଲ୍ଲିସଙ୍କୁ ଚିହ୍ନିବ କିଏ ?

ମୋର ସ୍ତ୍ରୀ ମୋତେ ଅବଶ୍ୟ ଚିହ୍ନି ପାରିବ । କୃପଣ ଇଲ୍ଲିସ ପ୍ରକାଶ କଲା ।

ଇଲ୍ଲିସର ପତ୍ନୀକୁ ଘଟଣାସ୍ଥଳୀକୁ ଡକାହେଲା । କିନ୍ତୁ ସେ ଛଦ୍ମବେଶୀ ଇଲ୍ଲିସଙ୍କର ପକ୍ଷ ସମର୍ଥନ କରି ତାଙ୍କରି ପାଖରେ ଛିଡ଼ାହେଲା । ଇଲ୍ଲିସର ସନ୍ତାନସନ୍ତତିମାନେ ଓ ଦାସଦାସୀମାନେ ମଧ୍ୟ କୃପଣ ଇଲ୍ଲିସଙ୍କୁ ଅସ୍ୱୀକାର କରି ଛଦ୍ମବେଶୀ ଇନ୍ଦ୍ରଙ୍କର ପକ୍ଷ ସମର୍ଥନ କଲେ ।

ଏତିକିବେଳେ କୃପଣ ଇଲି୍ଲସର ହଠାତ୍ ତାରି ମୁଣ୍ଡବାଳ ଭିତରେ ଲୁଚି ରହିଥିବା ଘାବୁଡ଼ି କଥା ମନେ ପଡ଼ିଗଲା । ବାରିକ ବ୍ୟତୀତ ଅନ୍ୟ କେହି ଯେ ଏକଥା ଜାଣି ନାହାନ୍ତି, ଏଥିରେ ନିଶ୍ଚିତ ହୋଇ ସେ ରାଜାଙ୍କ ଆଗରେ ଗୁହାରି କଲା, ମହାରାଜ ! ଆମର ବାରିକକୁ ଏଠାକୁ ଡକାଯାଉ । ସେ ଆମ ଦୁହିଁଙ୍କ ଭିତରୁ ପ୍ରକୃତ ଇଲି୍ଲସ କିଏ ଅନାୟାସରେ ଚିହ୍ନାଇ ଦେବ ।

ରାଜାଙ୍କ ଆଦେଶରେ ବାରିକକୁ ଡକାହେଲା ।

ଇତ୍ୟବସରରେ ଛଦ୍ମବେଶୀ ଇନ୍ଦ୍ର, କୃପଣ ଇଲି୍ଲସ ମସ୍ତକର ଘାବୁଡ଼ି ସଦୃଶ ଆଉ ଏକ ଘାବୁଡ଼ି ନିଜ ମସ୍ତକରେ ତିଆଣ କରିସାରି ଥିଲେ ।

ବାରିକ ଉଭୟଙ୍କର ମସ୍ତକରେ ସମାନ ସ୍ଥାନରେ ଏକାଭଳି ଘାବୁଡ଼ି ଆବିଷ୍କାର କରି, ପ୍ରକୃତ ଇଲି୍ଲସ କିଏ ଜାଣିପାରିଲା ନାହିଁ ।

ଶେଷ ଆଶା ଭରସାର ପ୍ରତୀକ ବାରିକ ମୁହଁରୁ ନାସ୍ତିବାଚକ ଉତ୍ତର ପାଇ, କୃପଣ ଇଲି୍ଲସ ହତାଶା ଓ ନିରାଶାରେ ଭାଙ୍ଗି ପଡ଼ିଲା । ସେ ଅଚେତନ ହୋଇ ତଳେ ପଡ଼ିଗଲା । ଲୋକେ ତା' ମୁହଁରେ ପାଣି ଛାଟି ଚେତା କରାଇଲେ ।

ଏହାପରେ ଛଦ୍ମବେଶୀ ଇନ୍ଦ୍ର, ଇଲି୍ଲସର ରୂପ ପରିହାର କରି ନିଜ ରୂପରେ ଶୂନ୍ୟ ମାର୍ଗକୁ ଉଠିଗଲେ । ସେ ପ୍ରକାଶ କଲେ, ହେ ରାଜା ! ମୁଁ ଇଲି୍ଲସ ନୁହେଁ । ମୁଁ ଇନ୍ଦ୍ରଦେବତା । ପୂର୍ବ ଜନ୍ମରେ ମୁଁ ଇଲି୍ଲସର ପିତା ଥିଲି । ଏବେ ସ୍ୱର୍ଗ ରାଜ୍ୟରେ ଇନ୍ଦ୍ର ହୋଇଛି ।

ପୁଣି ଇଲି୍ଲସକୁ ସମ୍ବୋଧନ କରି କହିଲେ, ମୁଁ ସବୁ ଧନ ସମ୍ପଦ ଅର୍ଜନ କରିଥିଲି । ତୁ ଅର୍ଜନ କରିନାହୁଁ । ମୁଁ ତୋର ବାପା । ତୁ ମୋର ପୁତ୍ର । ସେହି ସୂତ୍ରରେ ମୋରି ଅର୍ଜିତ ଧନର ଅଧିକାରୀ ହେଲୁ । ମୁଁ ଜୀବଦଶାରେ ଥିଲାବେଳେ ଦାନ ଧର୍ମ କରି ପୁଣ୍ୟ ଅର୍ଜନ କରିଥିଲି । ସେହି ପୁଣ୍ୟ ବଳରୁ ସ୍ୱର୍ଗ ଲୋକରେ ଇନ୍ଦ୍ରପଦ ଲାଭ କଲି । କିନ୍ତୁ ତୁ ମୋରି ପୁତ୍ର ହୋଇ ମଧ୍ୟ କୃପଣ ହେଲୁ । ତୁ ମୋରି ପଦାଙ୍କ ଅନୁସରଣ ନ କରି ମୋରି ଦ୍ୱାରା ସ୍ଥାପିତ ଧର୍ମଶାଳା ଓ ଅନ୍ନଛତ୍ରମାନ ବନ୍ଦ କରିଦେଲୁ । ମୋରି ଅର୍ଜିତ ଧନର ସଦ୍‌ବ୍ୟବହାର ହୋଇ ପାରିଲା ନାହିଁ । ତହିଁରେ ତୋର ନିଜର କିଛି ଉପକାର ହେଲାନାହିଁ କି ଜଗତର ଉପକାର ହେଲା ନାହିଁ । ତୁ ଯଦି ମୋରି ପଦାଙ୍କ ଅନୁସରଣ କରି ଦାନ ଧର୍ମରେ ବ୍ରତୀ ହେଉ, ତୋର ପୁଣ୍ୟ ଅର୍ଜନ ହେବ ଓ ସଦ୍‌ଗତି ଲାଭ ହେବ । ଯଦି ମୋ' କଥା ନଶୁଣି ପୁଣି କୃପଣ ଆଚରଣ

କରୁ, ତାହାହେଲେ ଅବଶିଷ୍ଟ ଧନ ସମ୍ପଦରୁ ତୋତେ ବଂଚିତ କରିବି ଓ ତୋର ସର୍ବନାଶ କରିବି ।

ଏ କଥା କହି ଇନ୍ଦ୍ର ଅଦୃଶ୍ୟ ହୋଇଗଲେ ।

ଇଲ୍ଲିସ ସବୁକଥା ଶୁଣିବା ପରେ ପିତାଙ୍କର ପଥ ଅନୁସରଣ କରି ଦାନପୁଣ୍ୟ ପ୍ରତି ମନ ବଳାଇଲା । ସେ ଆଉ କୃପଣ ନ ହୋଇ ସଦାବ୍ରତୀ ହେଲା ଓ ସ୍ୱର୍ଗଲୋକର ପଥ ପରିଷ୍କାର କରିଥିଲା ।

( ଇଲ୍ଲିସ ଜାତକ )





ଏକଦା ରାଜା ବ୍ରହ୍ମଦତ୍ତ କାଶୀ ରାଜ୍ୟରେ ରାଜୁତି କଲା-ବେଳେ, ଗୋଟିଏ ଗ୍ରାମରେ ଜଣେ ବ୍ରାହ୍ମଣ ବାସ କରୁଥିଲେ । ସେ ବୈଦର୍ଭ (ବେଦବ୍ଭ) ମନ୍ତ୍ର ଜାଣିଥିଲେ । ସେହି ମନ୍ତ୍ରର ବିଚିତ୍ର କରାମତି ଥିଲା । ବର୍ଷର କୌଣସି ଦିନ ଗ୍ରହନକ୍ଷତ୍ରମାନେ ଆକାଶର ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ 'ଅବସ୍ଥାନ କଲାବେଳେ ଏହି ବିଚିତ୍ର ମନ୍ତ୍ର ପାଠ କରି ଆକାଶକୁ ଚାହିଁଲେ, ସ୍ୱର୍ଣ୍ଣ, ରୌପ୍ୟ, ମୁକ୍ତା, ପ୍ରବାଳ, ଇନ୍ଦ୍ରନୀଳ, ବୈଦୁର୍ଯ୍ୟ ଓ ହୀରକ ଏହି ସପ୍ତ ରତ୍ନ ବୃଷ୍ଟି ହେଉଥିଲା ।

ଏହି ସମୟରେ ବୋଧିସତ୍ତ୍ୱ ଉକ୍ତ ବ୍ରାହ୍ମଣଙ୍କର ଶିଷ୍ୟ ରୂପେ ତାଙ୍କ ନିକଟରେ ରହି ବିଦ୍ୟାଭ୍ୟାସ କରୁଥିଲେ ।

ଦିନେ ବ୍ରାହ୍ମଣ ଜଣକ କୌଣସି ଏକ କାର୍ଯ୍ୟରେ ବୋଧିସତ୍ତ୍ୱଙ୍କୁ ସଙ୍ଗରେ ନେଇ ଚେତୀୟ ନଗରୀ (ଆଧୁନିକ ନାମ ଜବଲପୁର) ଅଭିମୁଖେ ଯାତ୍ରା କଲେ । ଯାତ୍ରା ପଥରେ ଏକ ଜଙ୍ଗଲ ପଡ଼ିଲା । ସେହି ଜଙ୍ଗଲ ଭିତରେ ଏକ ଦସ୍ୟୁ ଆଡ୍ଡା ଥିଲା । ଦସ୍ୟୁ ଦଳରେ ପାଞ୍ଚଶହ ଦସ୍ୟୁ ସାମିଲ ଥିଲେ । ଏହି ଦସ୍ୟୁଦଳକୁ ପ୍ରେଷଣକ କୁହାଯାଉଥିଲା । ଏମାନେ ଯଦି ଜଙ୍ଗଲ ରାସ୍ତାରେ କୌଣସି ବାପ-ପୁଅ ଗୁରୁ-ଶିଷ୍ୟ, ଦୁଇ ଭାଇ, ମାଆ-ଝିଅ ବା ଏଭଳି କୌଣସି ଦୁଇଜଣ କି ଦୁଇ ଜଣରୁ ଅଧିକ ପଥିକ ଦେଖୁ-ଥିଲେ, ସେମାନଙ୍କ ମଧ୍ୟରୁ ଜଣକୁ ଅବ୍ୟାହତି ଦେଇ, ଅନ୍ୟ ଜଣକୁ ବା ଅନ୍ୟମାନଙ୍କୁ ନିଜ ପାଖରେ ବନ୍ଦୀ କରି ରଖୁଥିଲେ । ଅବ୍ୟାହତି ଦେଇଥିବା ଲୋକକୁ ଧନ ଆଣି ଦେବାକୁ ଆଦେଶ ଦେଉଥିଲେ । ସେ ଧନ ଆଣି ପହଞ୍ଚାଇ ଦେବାପରେ ଅନ୍ୟମାନଙ୍କୁ ମୁକ୍ତ କରି ଦେଉଥିଲେ ।

ନିର୍ଜନ ପଥ ମଧ୍ୟରେ ଗୁରୁ ଶିଷ୍ୟ ଦୁଇ ଜଣ ଚାଲୁଥିବା ଦେଖି ଦସ୍ୟୁଦଳ ସେମାନଙ୍କୁ ଧରି ନେଲେ ଓ ମନ୍ତ୍ରଜ୍ଞ ବ୍ରାହ୍ମଣକୁ ବନ୍ଦୀ କରି ବୋଧିସତ୍ତ୍ୱଙ୍କୁ ଅର୍ଥର ବରଦ କଲେ ।

ବୋଧିସତ୍ତ୍ୱ ନିଜ ଗୁରୁଙ୍କ ପାଦତଳେ ସାଷ୍ଟାଙ୍ଗ ହେଲେ ଓ କହିଲେ, ଭୟ କରିବାର କିଛି ନାହିଁ । ଦିନେ ଦୁଇଦିନ ଭିତରେ ମୁଁ ଫେରି ଆସୁଛି ; କିନ୍ତୁ ଗୋଟିଏ କଥା ମନେ ରଖି ସାବଧାନରେ ଚଳିବ । ତାହା ହେଲା, ଆଜି ରାତିରେ ରତ୍ନ ବୃଷ୍ଟିର ଯୋଗ ଅଛି । ଆପଣ ଏମାନଙ୍କ କବଳରୁ ମୁକ୍ତି ପାଇବା ସକାଶେ ଅଧୀର ହୋଇ ଯଦି ଏମାନଙ୍କ ତୁଷ୍ଟି ବିଧାନ ପାଇଁ ମନ୍ତ୍ରପାଠ କରି ରତ୍ନ ବୃଷ୍ଟି କରନ୍ତି, ତାହାହେଲେ ତାହା ଆପଣଙ୍କର ଓ ଏହି ଦସ୍ୟୁ ଦଳର ବିନାଶର କାରଣ ହେବ । ଗୁରୁଦେବଙ୍କୁ ଏହି-ପରି କହି ସାବଧାନ କରାଇଦେଇ ବୋଧିସତ୍ତ୍ୱ ଧନ ସଂଗ୍ରହ କରିବା ସକାଶେ ବାହାରି ପଡ଼ିଲେ ।

ସେ ଦିନ ସନ୍ଧ୍ୟାରେ ଦସ୍ୟୁଦଳ ବ୍ରାହ୍ମଣଙ୍କୁ ବାନ୍ଧି ପକାଇ ତଳେ ଗଡ଼ାଇ ଦେଲେ ।

ଠିକ୍ ଏହିକ୍ଷିବେଳେ ଆକାଶରେ ପୂର୍ଣ୍ଣଚନ୍ଦ୍ର ଉଦୟ ହେଲା । ବ୍ରାହ୍ମଣ ଆକାଶକୁ ଚାହିଁ ବୁଝିଲେ, ରତ୍ନ ବୃଷ୍ଟି ସମୟ ସମାଗତ । ସେ ଭାବିଲେ, ଦସ୍ୟୁମାନେ ତାଙ୍କୁ ଧନ ଲୋଭରେ ବାନ୍ଧି ପକାଇଛନ୍ତି । ସେମାନେ ଧନ ପାଇଲେ ତାଙ୍କୁ ମୁକ୍ତ କରିଦେବେ । ତେବେ ମନ୍ତ୍ର ପାଠ କରି ଏମାନଙ୍କୁ ଧନ ଦିଆଇ ପାରିଲେ କ୍ଷତି କଣ ? ଏହି ଅଯଥା ଲାଞ୍ଛନାରୁ ମୁକ୍ତି ମିଳିଯିବ । ଏହା ସ୍ଥିର କରି ସେ ଦସ୍ୟୁମାନଙ୍କୁ କହିଲେ, ମୋତେ ବନ୍ଦୀ କରି ଲାଞ୍ଛନା କରୁଛ କାହିଁକି ?

ଧନ ପ୍ରାପ୍ତି ଆଶାରେ, ଦସ୍ୟୁମାନେ ଉତ୍ତର ଦେଲେ ।

ଧନ ପ୍ରାପ୍ତି ଆଶାରେ ମୋତେ ବାନ୍ଧି ରଖିଛ, ନୁହେଁ ? ଯଦି ମୁଁ ତୁମକୁ ଅମୂଲ୍ୟ ରତ୍ନଦାନ କରେ, ତାହାହେଲେ ମୋତେ ମୁକ୍ତ ଦେବ ତ ? ବ୍ରାହ୍ମଣ ପ୍ରଶ୍ନ କଲେ ।

ତାହାହେଲେ ତ ଆଉ କଥାନାହିଁ । ଦସ୍ୟୁମାନେ ପ୍ରତିଶ୍ରୁତି ଦେଲେ ।

ଆଚ୍ଛା, ଯଦି ଅମୂଲ୍ୟ ରତ୍ନ ପାଇବାକୁ ଇଚ୍ଛା କରୁଥାଅ, ତେବେ ମୋତେ ସ୍ନାନ କରାଇ ଦିଅ । ସ୍ନାନ ପରେ ନୂତନ ବସ୍ତ୍ର ପିନ୍ଧାଅ ଓ ସର୍ବାଙ୍ଗରେ ସୁଗନ୍ଧ ଲେପନ କର । ଏହା ପରେ ପୁଷ୍ପ ମାଲ୍ୟ ଅର୍ପଣ କରି ପବିତ୍ର ଆସନରେ ବସାଅ । ତାପରେ ମୋର କରାମତି ଦେଖ ।

ଦସ୍ୟୁଦଳ ବ୍ରାହ୍ମଣଙ୍କ କହିବା ମୁତାବକ ସବୁ କାମ କଲେ ।

ବ୍ରାହ୍ମଣ ଏହାପରେ ଗ୍ରହନକ୍ଷତ୍ରମାନଙ୍କ ଅବସ୍ଥିତି ପ୍ରତି ଲକ୍ଷ୍ୟ କରି ଆକାଶକୁ ଚାହିଁ ମନ୍ତ୍ରପାଠ କଲେ । ମନ୍ତ୍ରପାଠ ସଙ୍ଗେ ସଙ୍ଗେ ଆକାଶ ମାର୍ଗରୁ ସପ୍ତ ରତ୍ନ ବୃଷ୍ଟି ହେଲା ।

ଦସ୍ୟୁଦଳ ସବୁକଥା ଭୁଲି ରତ୍ନସବୁ ଗୋଟାଇବାରେ ଲାଗିଲେ ଓ ତାକୁ ଯତ୍ନ ସହକାରେ ବାନ୍ଧି ଆଗକୁ ଚାଲିବାକୁ ଲାଗିଲେ ।

ବ୍ରାହ୍ମଣ ମଧ୍ୟ ମୁକ୍ତି ଲାଭ କରି ସେମାନଙ୍କ ପଛେ ପଛେ ଚାଲିଲେ ।

କିଛିଦୂର ସେମାନେ ଅଗ୍ରସର ହେବା ପରେ ଆଉ ଏକ ଦସ୍ୟୁଦଳର ସମ୍ମୁଖୀନ ହେଲେ । ସେହି ଦଳରେ ମଧ୍ୟ ପାଞ୍ଚଶହ ଦସ୍ୟୁ ଥିଲେ । ସେମାନେ ଏହି ପ୍ରେଷଣକ ଦଳକୁ ଆକ୍ରମଣ କରି ସେମାନଙ୍କ ନିକଟରେ ଥିବା ଧନରତ୍ନ ସବୁ ଛଡାଇ ନେବାକୁ ବସିଲେ ।

ଏହାଦେଖି ପ୍ରେଷଣକ ଦଳର ସର୍ଦ୍ଦାର କହିଲା, ଏଇ ସାମାନ୍ୟ ଅର୍ଥ ପାଇଁ ଆମ ସଙ୍ଗେ ଲଢୁଛ କାହିଁକି ? ଆମ ସଙ୍ଗରେ ଥିବା ଏହି ବ୍ରାହ୍ମଣ ଆମକୁ ଏ ସବୁ ଦାନ କରିଛନ୍ତି । ସେ ଆକାଶକୁ ଚାହିଁ ମନ୍ତ୍ରପାଠ କଲେ ସପ୍ତରତ୍ନ ବର୍ଷା ହେଉଛି । ତାଙ୍କୁ କହିଲେ ଅନାୟାସରେ ସେ ତୁମକୁ ଏହାଠୁ ବଳି ଅଧିକ ଧନରତ୍ନ ଦେଇ ପାରିବେ ।

ଏହା ଶୁଣି ଦ୍ୱିତୀୟ ଦଳ ଦସ୍ୟୁ ପ୍ରେଷଣକଦଳକୁ ଛାଡ଼ି ଦେଇ ବ୍ରାହ୍ମଣଙ୍କୁ ଧରି ପକାଇଲେ ଓ ରତ୍ନ ବୃଷ୍ଟି କରାଇବାକୁ କହିଲେ ।

ବ୍ରାହ୍ମଣ ବଡ ଅଡୁଆରେ ପଡ଼ିଗଲେ । ସେ ସେହି ଦସ୍ୟୁ-ଦଳକୁ ବୁଝାଇ କହିଲେ ଯେ, ରତ୍ନବୃଷ୍ଟିର ଯୋଗ ଆଉ ନାହିଁ । ବର୍ଷକ ପରେ ଯାଇ ସେହି ଯୋଗ ପଡ଼ିବ । ତୁମେ ବର୍ଷେ ପର୍ଯ୍ୟନ୍ତ ଅପେକ୍ଷା କଲେ, ମୁଁ ମନ୍ତ୍ରପାଠ କରି ତୁମ ପାଇଁ ରତ୍ନ ବୃଷ୍ଟି କରାଇବି । ବର୍ତ୍ତମାନ କିଛି କରି ପାରିବି ନାହିଁ ।

କିନ୍ତୁ ଦ୍ୱିତୀୟ ଦସ୍ୟୁଦଳର ସର୍ଦ୍ଦାର ବ୍ରାହ୍ମଣଙ୍କ କଥାରେ ବିଶ୍ୱାସ କଲା ନାହିଁ । ସେ ଖୁବ୍ ରାଗିଯାଇ କହିଲା, ରେ ବ୍ରାହ୍ମଣ ! ଆମ ପାଖରେ ପ୍ରତାରଣା କରୁଛୁ ? ଆମେ କେମିତି ବିଶ୍ୱାସ କରିବୁ ଯେ ସେମାନଙ୍କ ପାଇଁ ଯୋଗ ଥିଲା ଓ ଆମ ବେଳକୁ ଯୋଗ ନାହିଁ ବୋଲି ? ମନେରଖ, ଯଦି ଆମ ପାଇଁ ରତ୍ନ ବୃଷ୍ଟି ନ କରୁ, ତାହାହେଲେ ତୋର ଜୀବନଧାରଣ ଅସମ୍ଭବ ।

ବ୍ରାହ୍ମଣ ରତ୍ନବୃଷ୍ଟି ନ କରିବାରୁ ସେମାନେ ଖଡ଼ଗରେ ତାଙ୍କୁ ହାଣି ପକାଇଲେ ଓ ପ୍ରେଷଣକ ଦଳର ପିଛା ଧରିଲେ ।

ଉଭୟ ଦଳର ଦସ୍ୟୁମାନଙ୍କ ମଧ୍ୟରେ ଭୟାନକ ଯୁଦ୍ଧ ହେଲା । ଏହି ଯୁଦ୍ଧରେ ପ୍ରେଷଣକ ଦଳର ପାଞ୍ଚଶହ ଦସ୍ୟୁ ନିହତ

ହେଲେ । ଯୁଦ୍ଧ ପରେ ସେମାନଙ୍କ ଧନରତ୍ନ ବାଣ୍ଟିବା ପ୍ରଶ୍ନ ନେଇ ଦ୍ୱିତୀୟ ଦଳର ଦସ୍ୟୁମାନଙ୍କ ମଧ୍ୟରେ ମତଭେଦ ହେଲା । ଏହି ମତ ଭେଦ ପରସ୍ପର ଭିତରେ ଯୁଦ୍ଧର କାରଣ ହେଲା । ଯୁଦ୍ଧରେ ଦୁଇଜଣ ଦସ୍ୟୁ ଙ୍କୁ ଛାଡ଼ି ସମସ୍ତେ ପ୍ରାଣ ହରାଇଲେ ।

ଜୀବିତ ଦସ୍ୟୁ ଦୁଇଜଣ ସମସ୍ତ ରତ୍ନ ଏକତ୍ରିତ କରି ନିଜ ସଙ୍ଗରେ ଆଣିଲେ । ସେମାନେ ତାକୁ ଗ୍ରାମ ନିକଟସ୍ଥ ଏକ ଜଙ୍ଗଲରେ ଲୁଚାଇ ରଖିଲେ । ଜଣେ ଦସ୍ୟୁ ହାତରେ ଖଣ୍ଡାଧରି ତାକୁ ଜଗି ରହିଲା ଓ ଅନ୍ୟ ଜଣକ ରନ୍ଧାବଢ଼ା ପାଇଁ ଚାଉଳ ଓ ଅନ୍ୟାନ୍ୟ ସଉଦାପତ୍ର ଆଣିବାକୁ ପାଖ ଗ୍ରାମକୁ ଗଲା ।

କିନ୍ତୁ କଥାରେ ଅଛି, ଲୋଭରୁ ପାପ । ପାପରୁ ମୃତ୍ୟୁ ।

ରତ୍ନ ଜଗି ବସିଥିବା ଦସ୍ୟୁଟି ମନେ ମନେ ଭାବିଲା, ସାଥୀଟି ଆସିଲେ ଏହି ଧନ ସମ୍ପଦକୁ ଭାଗ ମାଗିବ । ତେଣୁ ସେ ଆସିବା ମାତ୍ରେ ତାକୁ ହତ୍ୟା କରିଦେଲେ କାମ ସରିଲା । ଏହା ଭାବି ସେ ଖଣ୍ଡା ଧରି ସାଥୀର ଆଗମନକୁ ଅପେକ୍ଷା କରି ରହିଲା ।

ଗ୍ରାମକୁ ଯାଇଥିବା ଦସ୍ୟୁଟି ସେହିପରି ବିଚାର କଲା, ଅନ୍ୟ ଲୋକଟି ଧନ ସମ୍ପଦରୁ ଅବଶ୍ୟ ଅର୍ଦ୍ଧେକ ଦାବୀ କରିବ । ତାକୁ ମାରି ଦେଇ ପାରିଲେ କାମ ସରିଲା । ଏହା ବିଚାରି ସେ ସ୍ଥିର କଲା, ଖାଇବା ଜିନିଷରେ ବିଷ ମିଶାଇ ତା' ପାଖକୁ ନେଇଯିବ । ସେ ସେହି ବିଷମିଶା ଖାଦ୍ୟ ଖାଇ ସଙ୍ଗେ ସଙ୍ଗେ ମୃତ୍ୟୁମୁଖରେ ପଡ଼ିବ ।

ଏହା ବିଚାର କରି ସେ ଭଲ ଖାଦ୍ୟ ପେଟଭରି ଖାଇଲା ଓ ସାଥୀ ପାଖକୁ ନେଉଥିବା ଖାଦ୍ୟରେ ବିଷ ମିଶାଇ ଦେଲା । କିନ୍ତୁ ବିଷମିଶା ଖାଦ୍ୟ ନେଇ ସାଥୀ ପାଖରେ ପହଞ୍ଚିବା ମାତ୍ରେ, ତାକୁ ହତ୍ୟା କରିବାକୁ ଅପେକ୍ଷା କରିଥିବା ସାଥୀର ଖଣ୍ଡାରେ ପ୍ରାଣଗଲା ।

ସାଥୀର ପ୍ରାଣ ନେଇ ସାରିବା ପରେ ଅବଶିଷ୍ଟ ଦସ୍ୟୁଜଣକ ଆନନ୍ଦ ମନରେ ଭାବିବାକୁ ଲାଗିଲା, ଏଥର ସବୁ ଧନରତ୍ନ ଯାକ ମୋର । ଏଥିରେ ଆଉ କାହାରିର ଭାଗ ରହିଲା ନାହିଁ । ଏହା ଭାବି ସେ ଖାଇ ବସିଲା । କିନ୍ତୁ ବିଷ ମିଶା ଖାଦ୍ୟର ପ୍ରତିକ୍ରିୟା ଫଳରେ ଘଟଣା ସ୍ଥଳରେ ତାର ମୃତ୍ୟୁ ହେଲା ।

ଯେଉଁ ରତ୍ନ ପାଇଁ ଏତେ ବଡ କାଣ୍ଡ ଘଟିଗଲା, ସେ ସମସ୍ତ ସେହିପରି ପଡ଼ି ରହିଲା ।

ଏହି ଘଟଣାର ଦୁଇଦିନ ପରେ ବୋଧିସତ୍ତ୍ୱ ଆବଶ୍ୟକ ଅର୍ଥ ସଙ୍ଗରେ ନେଇ ଗୁରୁଦେବଙ୍କୁ ମୁକ୍ତ କରିବାକୁ ଫେରି

ଆସିଲେ । କିନ୍ତୁ ଗୁରୁଙ୍କୁ ଛାଡ଼ି ଦେଇ ଯାଇଥିବା ସ୍ଥାନରେ ଦସ୍ୟୁ ଦଳ କିମ୍ବା ଗୁରୁଦେବ କେହି ନଥିଲେ । ସେଇ ସ୍ଥାନରେ ସପ୍ତ-ରତ୍ନରୁ କିଛି କିଛି ବିଞ୍ଚି ହୋଇ ପଡ଼ିଥିଲା । ତାହା ଦେଖି ବୋଧିସତ୍ତ୍ୱ ବୁଝି ପାରିଲେ ଯେ, ଗୁରୁଦେବ ତାଙ୍କର ପରାମର୍ଶ ନ ମାନି ରତ୍ନ ବୃଷ୍ଟି କରାଇ ବିପଦ ବରଣ କରିଛନ୍ତି ।

ଆଉ କିଛିଦୂର ଚାଲିବା ପରେ ସେ ଗୁରୁଦେବଙ୍କର କଟା ଦେହ ଦେଖିବାକୁ ପାଇଲେ । ତା'ଠୁ ଆହୁରି କିଛିଦୂର ଯିବାପରେ ଅସଂଖ୍ୟ ଦସ୍ୟୁଙ୍କର ମୃତ ଦେହ ପଡ଼ିଥିବାର ଦେଖାଗଲା । ଏହା ପରେ ଜଙ୍ଗଲ ଭିତରେ ଦୁଇଜଣ ଦସ୍ୟୁଙ୍କର ଶବ ଓ ପ୍ରଚୁର ରତ୍ନ ଦୃଷ୍ଟିଗୋଚର ହେଲା । ଦୁଇଜଣ ଦସ୍ୟୁଙ୍କ ମଧ୍ୟରୁ ଜଣକର ମୁଣ୍ଡ କଟା ହୋଇଥିଲା । ଅନ୍ୟ ଜଣକ ପାଖରେ ଖାଦ୍ୟପାତ୍ର ଥିଲା ।

ଏଥିରୁ ବୋଧିସତ୍ତ୍ୱ ସମସ୍ତ କଥା ଅନୁମାନ କରିନେଲେ । ମନକୁ ମନ କହିଲେ, ଗୁରୁଦେବ ମୋ କଥା ନ ଶୁଣି କେବଳ ତାଙ୍କ ନିଜର ବିନାଶ ନୁହେଁ, ସହସ୍ର ଦସ୍ୟୁଙ୍କର ସର୍ବନାଶର କାରଣ ହେଲେ । ବିନା ବିଚାରରେ ରତ୍ନ ବୃଷ୍ଟି କରାଇବା ଉଚିତ ହେଲା ନାହିଁ । ସେହି ରତ୍ନ ସମସ୍ତଙ୍କର ମୃତ୍ୟୁର କାରଣ ହେଲା ।

ଅବଶେଷରେ ବୋଧିସତ୍ତ୍ୱ ସେହି ଧନରତ୍ନ ସାହାଯ୍ୟରେ ଦୀନଦରିଦ୍ରଙ୍କର କଲ୍ୟାଣ ସାଧନ କଲେ ଓ ମୃତ୍ୟୁ ପରେ ମୋକ୍ଷଗତି ଲାଭ କଲେ ।

(ବେଦବ୍ଭ ଜାତକ)






ବାରଣସୀ ରାଜ୍ୟରେ ରାଜା ବ୍ରହ୍ମଦତ୍ତ ରାଜୁତି କଲାବେଳେ, ହିମାଳୟର ପାଦଦେଶରେ ଗୋଟିଏ ପାହାଡ଼ ଥିଲା । ସେହି ପାହାଡ଼ରେ ପଲେ ଛେଳି ବାସ କରୁଥିଲେ ।

ଛେଳିମାନେ ବାସ କରୁଥିବା ସ୍ଥାନରୁ ଅଳ୍ପ ଦୂରରେ, ଗୋଟିଏ ଗୁମ୍ଫା ଭିତରେ ପୂତିମାଂସ ନାମକ ଏକ ଶୃଗାଳ ତାର ପତ୍ନୀ ବେଣୀ ସଙ୍ଗରେ ବାସ କରୁଥିଲେ ।

ଦିନେ ପୂତିମାଂସ ତାର ସ୍ତ୍ରୀ ବେଣୀ ସଙ୍ଗରେ ପାହାଡ଼ ମଧ୍ୟରେ ବିଚରଣ କଲାବେଳେ, ଏହି ଛେଳିପଲ ଉପରେ ଲୋଭିଲା ଚାହାଣୀ ପକାଇଲା ।

ଦିନେ ପୂତିମାଂସ କୌଶଳ କରି ଗୋଟିଏ ଛେଳି ମାରିଲା ଓ ତାର ପତ୍ନୀ ସଙ୍ଗ ସେହି ମାଂସ ଭକ୍ଷଣ କରି ଅଶେଷ ଆନନ୍ଦ ଲାଭ କଲା । ଛେଳି ମାଂସ ପାଟିରେ ଲାଗିଯିବାରୁ ସେ ଆଉ ତାର ଲୋଭ ଛାଡ଼ି ପାରିଲା ନାହିଁ । ପ୍ରତିଦିନ କୌଣସି ନା କୌଣସି ଉପାୟ ଅବଲମ୍ବନ କରି, ସେ ଗୋଟାକ ପରେ ଗୋଟିଏ ଛେଳି ମାରି ଖାଇବାକୁ ଲାଗିଲା । ଛେଳି ମାଂସ ଖାଇ ପତି ପତ୍ନୀ ଉଭୟେ ହୃଷ୍ଟପୁଷ୍ଟ ହୋଇଗଲେ । ତେଣେ ଛେଳିସଂଖ୍ୟା ପ୍ରତିଦିନ କମିବାକୁ ଲାଗିଲା ।

ଛେଳିପଲ ଭିତରେ 'ମେଳମାତା' ନାମରେ ଏକ ହୃଷ୍ଟ-ପୁଷ୍ଟ ତଥା ବୁଦ୍ଧିମତୀ ମାଈ ଛେଳି ଥିଲା । ଶୃଗାଳଟି ତାକୁ ମାରିବ ବୋଲି ବହୁ ଚେଷ୍ଟା କରି ବିଫଳ ହେବା ପରେ, ତାର ପତ୍ନୀକୁ ଯାଇ କହିଲା, ଦେଖ, ଛେଳି ପଲରୁ ଅନେକ ଛେଳି ଆମେ ଖାଇଲେଣି । ବର୍ତ୍ତମାନ ମେଳମାତାକୁ ଖାଇବା । କିନ୍ତୁ ମୁଁ ତାକୁ କୌଣସି ଉପାୟରେ ମାରି ପାରୁ ନାହିଁ । ତୁମେ ଏଥିରେ ମୋତେ ସାହାଯ୍ୟ କଲେ, ତାକୁ ସହଜରେ ମାରି ଦେଇ ହେବ ।

ବେଣୀ ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେବାରୁ ପୂତିମାଂସ କହିଲା, ତୁମେ ଏକୁଟିଆ ତା' ପାଖକୁ ଯାଇ ବନ୍ଧୁତା କର । ତାକୁ

ତୁମର ବିଶ୍ୱାସକୁ ନେଇଆସ । ଏହାପରେ ମୋତେ ଖବର ଦେଲେ, ମୁଁ ମଲାପରି ଶୋଇ ପଡ଼ିବି । ତୁମେ ତା' ପାଖକୁ ଯାଇ କାନ୍ଦୁଣାମାନ୍ଦୁଣା ହୋଇ କହିବ, ମୋ ସ୍ୱାମୀ ମରିଗଲେ । ମୁଁ ସଂସାରରେ ଏକୁଟିଆ ହୋଇଗଲି । ତୁମ ଛଡ଼ା ମୋର ଆଉ କେହି ନାହାନ୍ତି । ଆସ, ଆମେ ଏକାଠି ହୋଇ ଶବ ସତ୍କାର କରିବା ଓ ଶୋକ ପାଳିବା । ଏହା କହିଲେ ସେ ତୁମ ସଙ୍ଗରେ ଆସିବ । ପାଖକୁ ଆସିବା ମାତ୍ରେ ମୁଁ ତାର ବେକ ମୋଡ଼ି ଖାଇ ଯିବି ।

ସ୍ୱାମୀର ଉପଦେଶ ମାନି ବେଣୀ ଏକୁଟିଆ ଯାଇ ମେଳମାତା ସଙ୍ଗେ ବନ୍ଧୁତା କଲା ଓ କାଳକ୍ରମେ ବିଶ୍ୱସ୍ତ ହୋଇପଡ଼ିଲା । ସେ ଏକଥା ଯାଇ ତାର ସ୍ୱାମୀ ପୂତିମାଂସ ଆଗରେ ପ୍ରକାଶ କରିବାରୁ, ପୂତିମାଂସ ମଡ଼ା ପରି ଆଖିବୁଜି ମାଟି ଉପରେ ଶୋଇ ପଡ଼ିଲା । ବେଣୀ ତା' ପତିର କହିବା ମୁତାବକ ମେଳମାତାକୁ କାନ୍ଦୁଣାମାନ୍ଦୁଣା ହୋଇ ତାର ଉପସ୍ଥିତ ଦୁଃଖ କଥା ଜଣାଇଲା ଓ ଶବ ସତ୍କାର କରିବା ପାଇଁ ଡାକିଲା ।

କିନ୍ତୁ ବୁଦ୍ଧିମତୀ ମେଳମାତା କହିଲା, ତୁମର ସ୍ୱାମୀ ଆମ ଦଳର ବହୁ ଛେଳି ଖାଇ ଯାଇଛି । ତାକୁ ମୋର ପ୍ରାଣେ ଡର । ମୁଁ ଯାଇ ପାରିବି ନାହିଁ ।

ଏହାଶୁଣି ବେଣୀ କହିଲା, ସେ ବର୍ତ୍ତମାନ ମୃତ । ମଡ଼ାଟାକୁ ଡରି ଲାଭ କଣ ?

କିନ୍ତୁ ସେ ଖୁବ୍ ଦୁଷ୍ଟ ପ୍ରକୃତିର । ମେଳମାତା କହିଲା ।

ମଡ଼ଟା ଉପରେ ରାଗ ଧରି ଲାଭ କଣ ? ବେଣୀ ବୁଝାଇଲା ।

ବେଣୀର ବାରମ୍ବାର କାକୁତିମିନତି ଶୁଣି ମେଳମାତା ଭାବିଲା, ପ୍ରକୃତରେ ବୋଧହୁଏ ପୂତିମାଂସ ମରିଯାଇଛି । ସେ ମନରେ ସାହସ ବାନ୍ଧି ବେଣୀ ସଙ୍ଗରେ ଯିବାକୁ ରାଜି ହେଲା ।

କିନ୍ତୁ ବାଟ ମଝିରେ ମେଳମାତା ଚିନ୍ତା କଲା, କଣ ହେଉଛି କି କଣ ହେବ, ଏକଥା ଠିକ୍ ଭାବରେ ଜଣା ନାହିଁ । ତେଣୁ ଆଗରେ ଚାଲିବା ଭଲ ନୁହେଁ । ସେ ବେଣୀକୁ ଆଗରେ ଆଗରେ ଚଲାଇ ନିଜେ ତାର ଅନୁଗମନ କଲା । ଗଲାବେଳେ ସତର୍କ ଆଖିରେ ସବୁ ଆଡ଼ିକି ନଜର ରଖିଥାଏ ।

ବେଣୀ ଓ ମେଳମାତାର ପାଦ ଶବ୍ଦ ଶୁଣି ପୂତିମାଂସ ଭାବିଲା, ବୋଧହୁଏ ସେମାନେ ଆସିଗଲେ । ଏହା ଭାବି ସେ ବେକ ଟେକି ଆଖି ଖୋଲି ସେମାନଙ୍କୁ ଚାହିଁଲା ।

ପୂତିମାଂସର ଏ ଚାହାଣି ମେଳମାତାର ସଜାଗ ଆଖିକୁ ଏଡ଼ାଇ ଦେଇ ପାରିଲା ନାହିଁ । ସେ ପ୍ରକୃତ ଘଟଣା ବୁଝି ପାରିଲା । ମନେ ମନେ ଭାବିଲା, ଏ ଦୁଷ୍ଟ ମୋତେ ମାରିବ ବୋଲି ଷଡଯନ୍ତ୍ର କରିଛି । ମିଛଟାରେ ମରି ପଡ଼ିଥିବାର ଛଳନା କରୁଛି । ଏହା ଭାବି ସେ ସେଇଠୁ ଦଉଡ଼ି ଦଉଡ଼ି ଚାଲିଗଲା ।

ମେଳମାତା ପଳାଇ ଯାଉଥିବା ଦେଖି ବେଣୀ ତାର କାରଣ ପଚାରିଲା ।

ମେଳମାତା ଉତ୍ତର ଦେଲା, ପୂତିମାଂସ ମରି ଯାଇଥିଲେ ଏମିତି ଭାବରେ ଅନାଇ ନଥାନ୍ତା । ତାର ଚାହାଣିରେ ମୋ' ପ୍ରତି ଘୃଣାଭାବ ଥିବାର ଦେଖିଲି । ଏପରି ଦୁଷ୍ଟ ବଂଧୁଠାରୁ ଦୂରେଇ ରହିବା ଭଲ ।

ବେଣୀ ମେଳମାତାକୁ ଆଉ ଫେରାଇ ନ ପାରି, ତାକୁ ଗାଳି କରୁ କରୁ ସ୍ୱାମୀ ପାଖକୁ ଫେରି ଆସିଲା ।

ପୂତିମାଂସ ନିଜ ପତ୍ନୀ ଉପରେ ବିରକ୍ତି ଭାବ ପ୍ରକାଶ କରି କହିଲା, ବେଣୀ ! ତୁମର ମୋଟେ ହେଲେ ବୁଦ୍ଧି ଅକଲ ନାହିଁ । ମେଳମାତା ସଙ୍ଗେ ବନ୍ଧୁତା ବାନ୍ଧି ମଧ୍ୟ ପାଖକୁ ଆଣି ପାରିଲ ନାହିଁ ।

ବେଣୀ ଏହା ଶୁଣି ସଙ୍ଗେ ସଙ୍ଗେ ଉତ୍ତର ଦେଲା, ତୁମର ବୁଦ୍ଧି କଣ ଭଲ ? ନିଜେ ମଡ଼ା ସାଜି ଥିଲ ତ, ବେକ ଟେକି ଜୁଳୁ ଜୁଳୁ କରି ଅନାଉଥିଲ କାହିଁକି ? ଏହାପରେ ପୁଣି ସାନ୍ତ୍ୱନା ଦେଇ କହିଲା, ବ୍ୟସ୍ତ ହୁଅ ନାହିଁ । ପୁଣି ଉପାୟ କରି ତାକୁ ମୁଁ ତୁମ ପାଖକୁ ନେଇ ଆସିବି । କିନ୍ତୁ ପୂର୍ବପରି ଭୁଲ କରିବ ନାହିଁ ।

ପରେ ମେଳମାତା ପାଖକୁ ଯାଇ ବେଣୀ କହିଲା, ତୁମର ଉପସ୍ଥିତି ହିଁ ମୋର ମୃତ ସ୍ୱାମୀର ପିଣ୍ଡରେ ପ୍ରାଣ ସଞ୍ଚାର କଲା । ଧନ୍ୟ ତୁମର ଶକ୍ତି । ବର୍ତ୍ତମାନ ସେ ସୁସ୍ଥ । ଆମେ ତୁମ ପାଖରେ କୃତଜ୍ଞ ରହିଲୁ । ଆମ ମଧ୍ୟରେ ବନ୍ଧୁଭାବ ରହିବ । ତୁମେ ତାଙ୍କୁ ଦେଖାକଲେ ସେ ତୁମକୁ ଅଭ୍ୟର୍ଥନା ଜଣାଇବେ ।

ଏହାଶୁଣି ବୁଦ୍ଧିମତୀ ମେଳମାତା ଭାବିଲା, ଦୁଷ୍ଟ ବେଣୀ ପୁଣିଥରେ ପାଲରେ ପକାଇବାକୁ ଚାହୁଁଛୁ । ପ୍ରକାଶ୍ୟରେ ତା' ସଙ୍ଗେ ଶତ୍ରୁତା ନ କରି, ତା' ସଙ୍ଗେ ଛଳ ଆଚରଣ କରିବା ବିଧେୟ । ଏହା ଭାବି ସେ କହିଲା, ଠିକ୍ ଅଛି । ମୁଁ ତୁମ କଥା ରଖିବି । ସଙ୍ଗରେ କିଛି ଆଧାର ଓ ବଂଧୁମାନଙ୍କୁ ନେଇ ସଞ୍ଜକୁ ଆସିବି ।

ବେଣୀ ତାର ବନ୍ଧୁମାନଙ୍କ ସଂପର୍କରେ ପ୍ରଶ୍ନ କରିବାରୁ ମେଳମାଧା କହିଲା, କୁକୁରମାନେ ହେଲେ ଆମର ବନ୍ଧୁ । ମୁଁ ଦୁଇ ହଜାର କୁକୁର ସଙ୍ଗରେ ନେଇ ଯାଉଛି । ତୁମେ ଶୀଘ୍ର ଯାଇ ଆମମାନଙ୍କର ବ୍ୟବସ୍ଥା କର । ଏଇ କୁକୁରମାନେ ସଙ୍ଗରେ ଯାଇ ଯଦି ଖାଇବାକୁ ପାଇବେ ନାହିଁ, ତାହାହେଲେ ତୁମର ଓ ଆମର ସର୍ବନାଶ କରି ପକାଇବେ ।

ଏହା ଶୁଣି ବେଣୀ ଛାନିଆ ହୋଇଗଲା । ସେ ଭାବିଲା, ମୋଳମାତା ସଙ୍ଗରେ କୁକୁର ନେଇ ସଙ୍ଗୁଳିବାକୁ ଆସିଲେ କଥା ସରିଲା । ତେଣୁ ସେ ନ ଆସିବା ଭଲ । କହିଲା, ନା ନା, ତୁମର ସଙ୍ଗୁଳି ଆସିବା ଆବଶ୍ୟକ ନାହିଁ । ଘର ତେଣେ ମେଲା ପଡ଼ିବ । ଘର ମେଲା ପଡ଼ିଲେ ଜିନିଷପତ୍ର ଚୋରି ହେବାର ସମ୍ଭାବନା । ତେଣୁ ତୁମେ ଆସିବ ନାହିଁ । ମୁଁ ବରଂ ତୁମର: ଶୁଭେଚ୍ଛା ବାର୍ତ୍ତା ମୋ ସ୍ୱାମୀଙ୍କ ନିକଟରେ ପହଞ୍ଚାଇ ଦେବି ।

ଏହା କହି ବେଣୀ ଲସରପସର ହୋଇ ଧାଇଁଲା । ପଛକୁ ଥରେ ମୁହାଁ ଚାହିଁଲା ନାହିଁ । ଭାବିଲା, ଛେଳି ମାଂସ ପଛକେ ନ ଖାଇଲେ ନାହିଁ, ଜୀବନ ବଞ୍ଚୁ । ସେ ସ୍ୱାମୀ ଆଗରେ ସବୁ କଥା ଯାଇ କହିଲା ।

ଏହାପରେ ସ୍ୱାମୀ ସ୍ତ୍ରୀ ଦୁହେଁ କୁଆଡେ ଯାଇ ଲୁଚି ରହିଲେ ଯେ, ଆଉ ସେମାନଙ୍କର ପତ୍ତା ମିଳିଲା ନାହିଁ ।

ବୁଦ୍ଧିମତୀ ମେଳମାତା ଓ ଛେଳିମାନେ ନିରାପଦରେ ବସବାସ କରି ରହିଲେ ।

(ପୂତିମାଂସ ଜାତକ)



# ଦାନର ପ୍ରତିଦାନ



ପ୍ରାଚୀନ କାଳରେ ବୋଧିସତ୍ତ୍ୱ ବାରାଣସୀ ରାଜ୍ୟର ରାଜା ରୂପରେ ଜନ୍ମଗ୍ରହଣ କରିଥିଲେ । ସେ ସର୍ବଦା ଧର୍ମମାର୍ଗରେ ଗତୁଡି କରୁଥିଲେ । ଦାନ ପୁଣ୍ୟ କରୁଥିବାରୁ ଲୋକେ ତାଙ୍କୁ ଧନ୍ୟ ଧନ୍ୟ କହୁଥିଲେ ।

ଥରେ ବାରାଣସୀ ରାଜ୍ୟର ପ୍ରତ୍ୟନ୍ତ ଦେଶରେ ବିଦ୍ରୋହ ଦେଖାଦେଲା । ବିଦ୍ରୋହ ଶାନ୍ତ କରିବା ଉଦ୍ଦେଶ୍ୟରେ ନିଜର ସୈନ୍ୟସାମନ୍ତ ନେଇ ସେ ଅଭିଯାନ କଲେ ; କିନ୍ତୁ ପରାସ୍ତ ହୋଇ ଅଶ୍ୱପୃଷ୍ଠରେ ପଳାୟନ କଲେ । ଏହିପରି ଭାବରେ ପଳାୟନ କରୁ କରୁ ଯେତେବେଳେ ତାଙ୍କର ବିଶ୍ୱାସ ହେଲା ଯେ, ଆଉ ଶତ୍ରୁ ଭୟର ଆଶଙ୍କା ନାହିଁ, ସେ ପାର୍ଶ୍ୱସ୍ଥ ଗ୍ରାମରେ ଆତ୍ମଗୋପନ କରିବାକୁ ଚାହିଁଲେ । ସେହି ଗ୍ରାମରେ ଯେତେବେଳେ ତିରିଶ ଜଣ ରାଜକର୍ମଚାରୀ ରହୁଥିଲେ, ସକାଳ ପାହିଥିଲା । ରାଜକର୍ମଚାରୀମାନେ ନିଜ ନିଜ କାର୍ଯ୍ୟରେ ଚାଲି ଯାଇଥିଲେ । ଠିକ୍ ଏତିକିବେଳେ ରାଜା ସେହି ଗ୍ରାମରେ ପ୍ରବେଶ କଲେ ।

ରାଜାଙ୍କର ବେଶ ପୋଷାକ ଦେଖି ଗ୍ରାମବାସୀମାନେ ଯେ ଯାହାର ଘର ଭିତରକୁ ଭୟରେ ପଳାଇଗଲେ ; କିନ୍ତୁ ଗ୍ରାମବାସୀମାନଙ୍କ ଭିତରେ ଜଣେ ବୁଦ୍ଧିମାନ ନାଗରିକ ଥିଲା । ସେ ବେଶପୋଷାକକୁ ଭୟ ନ କରି, ଆଗନ୍ତୁକଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ ପ୍ରଶ୍ନକଲା—ତୁମର ବେଶ ପୋଷାକରୁ ଅନୁମାନ ହେଉଛି ତୁମେ କୌଣସି ଦେଶର ରାଜା ଅଟ । ଆମ ରାଜା ବିଦ୍ରୋହ ଦମନ କରିବାକୁ ପ୍ରତ୍ୟନ୍ତ ଦେଶକୁ ଯାଇଛନ୍ତି । ଦୟାକରି ତୁମର ପରିଚୟ ପ୍ରଦାନ କର ।

ଏହାଶୁଣି ରାଜା ଉତ୍ତର ଦେଲେ—ମୁଁ ରାଜାଙ୍କ ଲୋକ ଅଟେ । ରାଜାଙ୍କ ଲୋକ ବୋଲି ଜାଣି, ସେହି ଗ୍ରାମବାସୀ ତାଙ୍କୁ ସମ୍ମାନ ପ୍ରଦର୍ଶନ କଲେ ଓ ନିଜ ସଙ୍ଗରେ ନିଜ ବାସଗୃହକୁ ନେଇଗଲା । ବାସଗୃହରେ ନିଜ ସ୍ତ୍ରୀ ହାତରେ ଶ୍ରଦ୍ଧେୟ ଅତିଥିଙ୍କ ପଦ ପ୍ରକ୍ଷାଳନ କରାଇଲା ଓ ଦିବ୍ୟ ଭୋଜନରେ ଆପ୍ୟାୟିତ କଲା ।

କେବଳ ସେତିକି ନୁହେଁ, ରାଜାଙ୍କୁ ସଙ୍ଗରେ ନେଇ ଆସିଥିବା ଅଶ୍ୱର ସେବା ଶୁଶ୍ରୂଷା କଲା ଓ ଖୁଆଇ ପିଆଇ ଆରାମରେ ରଖିଲା ।

ଏହିପରି ଭାବରେ କିଛିଦିନ ବିତିଗଲା । ଦିନେ ରାଜା ସେହି ଗ୍ରାମବାସୀ ଆଗରେ ପ୍ରକାଶ କଲେ—ଏଥର ସମୟ ହୋଇଗଲା । ମୋତେ ଫେରିଯିବାକୁ ପଡ଼ିବ । ବିଦାୟ ଦିଅ ।

ଏହା ଶୁଣି ଗ୍ରାମବାସୀ ଜଣକ ଅତିଥିଙ୍କୁ ଉପଯୁକ୍ତ ବିଦାୟ ସମ୍ବର୍ଦ୍ଧନା ଜ୍ଞାପନ କଲା ।

ବିଦାୟ ନେଇ ଫେରି ଗଲାବେଳେ ରାଜା ଗ୍ରାମବାସୀର ହାତ ଧରି କହିଲେ, ମୁଁ ତୁମରି ଅତିଥି ସେବା ଦେଖି ପରମ ସନ୍ତୋଷ ଲାଭ କରିଛି । ତୁମେ ତୁମର ସାମର୍ଥ୍ୟ ଅନୁସାରେ ମୋର ସେବା କଲ । ଗଲାବେଳେ କହି ଯାଉଛି—ମୋର ନାମ ମହା-ଅଶ୍ୱାରୋହ । ମୋ ବାସସ୍ଥାନ ରାଜଧାନୀରେ । ଯଦି କେବେ ତୁମର କାମ ପଡ଼େ ଓ ରାଜଧାନୀକୁ ଆସ, ତାହାହେଲେ ଦକ୍ଷିଣ ଦ୍ୱାରପାଳକୁ କହିବ ଯେ, ତୁମେ ମହାଅଶ୍ୱାରୋହ ସଙ୍ଗରେ ସାକ୍ଷାତ କରିବାକୁ ଚାହୁଁଛ । ସେ ତୁମକୁ ମୋ' ସଙ୍ଗରେ ସାକ୍ଷାତ କରାଇ ଦେବ ।

ଏତକ କହି ରାଜା ଅଶ୍ୱପୃଷ୍ଠରେ ଚାଲିଗଲେ ।

ଏହାପରେ ରାଜା ଯେତେବେଳେ ନିଜ ନଅରର ଭିତରେ ପହଞ୍ଚିଲେ, ସେ ଦକ୍ଷିଣ ଦ୍ୱାରପାଳକୁ ଡକାଇ କହିଲେ, ଦେଖ, ପ୍ରତ୍ୟନ୍ତ ରାଜ୍ୟର ଏକ ଗ୍ରାମବାସୀ ମୋତେ ସାକ୍ଷାତ କରିବାକୁ ଆସିବ । ସେ ତୁମକୁ ମହା ଅଶ୍ୱାରୋହର ଠିକଣା ପଚାରିବ । ତୁମେ ତାକୁ ଦେଖିଲେ ଆଦର ଅଭ୍ୟର୍ଥନା ଜଣାଇ ମୋ' ନିକଟରେ ପହଞ୍ଚାଇ ଦେବ । ଏଇଆ କଲେ ତୁମକୁ ଏକ ହଜାର ମୁଦ୍ରା ପୁରସ୍କାର ଦିଆଯିବ ।

ମନେ ମନେ ରାଜା ସେହି ଅତିଥିପରାୟଣ ଗ୍ରାମବାସୀର ପ୍ରତୀକ୍ଷା କଲେ, କିନ୍ତୁ ସେ ଆସିଲା ନାହିଁ । ତେଣୁ ରାଜା ଭାବିଲେ, ସେହି ଗ୍ରାମର ଖଜଣା ବଢ଼ାଇଦେଲେ ଗ୍ରାମବାସୀ ହୁଏତ ବନ୍ଧୁ ପାଖରୁ ସାହାଯ୍ୟ ପାଇବ ବୋଲି ଆଶା କରି ସହରକୁ ଆସିପାରେ । ତେଣୁ ସେ ସେହି ଗ୍ରାମର ଖଜଣା ବଢ଼ାଇଦେଲେ । ତଥାପି ଗ୍ରାମବାସୀ ଆସିଲା ନାହିଁ । ଠିକ୍ ସେହି ବିଚାର କରି ସେ ସେହି ଗ୍ରାମର ଖଜଣାକୁ ଦୁଇଗୁଣ ଓ ପରେ ତିନିଗୁଣ ବଢ଼ାଇ-ଦେଲେ । ତଥାପି ଗ୍ରାମବାସୀର ଦେଖା ନାହିଁ ।

ଏଣେ ସେହି ଗ୍ରାମରେ ଲୋକଙ୍କ ଅବସ୍ଥା ଦୟନୀୟ ହୋଇ ପଡ଼ିଲା । ବର୍ଦ୍ଧିତ ଖଜଣା ଆଦେଶରେ ସେମାନେ ଛାହି ଛାହି ଧିକ ଛାଡ଼ିଲେ ।

କୌଣସି ପ୍ରକାର ଖଜଣା ଭାର ଲାଘବ ହୋଇ ପାରିଲେ ରକ୍ଷା ମିଳନ୍ତା ବୋଲି ମନେକଲେ । ସମଗ୍ର ଗ୍ରାମବାସୀ ମେଳିବାନ୍ଧି ସେହି ଅତିଥିପରାୟଣ ଗ୍ରାମବାସୀ ଦୁଆରେ ଯାଇ ହାଜର ହେଲେ ଏବଂ କହିଲେ—ଦେଖ, ଆମର କୌଣସି ବଡଲୋକ ସଙ୍ଗେ ପରିଚୟ ନାହିଁ । ତେଣୁ ଆମେ ଆମର ମୁଣ୍ଡ ଉପରେ ପଡିଥିବା ବର୍ଦ୍ଧିତ ଖଜଣା ବୋଝର କୌଣସି ପ୍ରତିକାର କରି ପାରିବୁ ନାହିଁ ; କିନ୍ତୁ ଆମେ ଜାଣୁ, ଜଣେ ରାଜାଙ୍କ ଲୋକ ଆସି ତୁମରି ଘରେ ଆତିଥ୍ୟ ଗ୍ରହଣ କରିଥିଲା । ଗଲାବେଳେ ତୁମ ଆଗରେ ସନ୍ତୋଷ ପ୍ରକଟ କରିଥିଲା । ତେଣୁ ତୁମେ ତା' ନିକଟକୁ ଯାଇ ଏହି ବର୍ଦ୍ଧିତ ଖଜଣା କଥା କହିଲେ, ଆମର କିଛି ମଙ୍ଗଳ ହୋଇପାରେ । ତୁମେ ଏଥିରେ ଆମକୁ ସାହାଯ୍ୟ କର ।

ଗ୍ରାମର ସେହି ଅତିଥିପରାୟଣ ଗୃହସେବକ ନିଜ ଇଚ୍ଛାରେ ଗ୍ରାମଛାଡି କୁଆଡେ ହେଲେ ଯିବାକୁ ପସନ୍ଦ କରୁ ନଥିଲା ; କିନ୍ତୁ ଗ୍ରାମବାସୀମାନେ ଏଥିପାଇଁ ତା'ଆଗରେ ଅଡିବସିବା ଦେଖି ସେ କହିଲା—ଆଚ୍ଛା କଥା, ଯଦି ତୁମେ ସମସ୍ତେ ମୋତେ ଯିବାକୁ କହୁଛ ତେବେ ମୁଁ ନିଶ୍ଚୟ ଯିବି ; କିନ୍ତୁ ଭିକାରି ପରି କାହାରି ଦ୍ୱାରସ୍ଥ ହେବା ମୋର ଅଭିପ୍ରାୟ ନୁହେଁ । ମୁଁ ଯଦି ଯିବି, ତାଙ୍କର ଜଣେ ବନ୍ଧୁ ପରି ଯିବି : ସଙ୍ଗରେ ତାଙ୍କ ପାଇଁ କିଛି ଭେଟି ବି' ନେଇଯିବି । କିନ୍ତୁ ମୋ' ପାଖରେ ଏତେ ଧନ କାହିଁ ଯେ, ମୁଁ ମିତ୍ର-ସୁଲଭ ସମସ୍ତ ଆୟୋଜନ କରିବାରେ ସକ୍ଷମ ହେବି ? ତେଣୁ ସମସ୍ତ ଗ୍ରାମବାସୀ ଯଦି ଚାହିଁବ, ତାହାହେଲେ ଏକଥା ସମ୍ଭବ ହୋଇପାରେ ।

ଗ୍ରାମବାସୀମାନେ ସମସ୍ତେ ଏଥିରେ ସହଯୋଗ କଲେ । ଭେଟି ପାଇଁ ସମସ୍ତ ଆୟୋଜନ ସମାପ୍ତ ହେଲା । ଏହାପରେ ସମସ୍ତ ଜିନିଷପତ୍ର ସଙ୍ଗରେ ନେଇ ସେ ନଅରର ଦକ୍ଷିଣ ଦ୍ୱାରପାଳ ଆଗରେ ପ୍ରବେଶ ହେଲା ଏବଂ ମହାଅଶ୍ୱାରୋହଙ୍କର ଠିକଣା ପଚାରିଲା ।

ଏହା ଶୁଣି ଦ୍ୱାରପାଳ ଆଗନ୍ତୁକଙ୍କୁ ବହୁତ ଆଦର ଅଭ୍ୟର୍ଥନା ଜଣାଇଲା ଓ ସସମ୍ମାନେ ନେଇ ରାଜାଙ୍କ ଅନ୍ତଃପୁରରେ ପହଞ୍ଚାଇ ଦେଲା । ରାଜା ପ୍ରତ୍ୟନ୍ତ ଦେଶର ଗ୍ରାମବାସୀଙ୍କୁ ଦକ୍ଷିଣ ଦ୍ୱାରପାଳ ସଙ୍ଗରେ ନେଇ ଆସୁଥିବା ଶୁଣି ସମସ୍ତ କଥା ବୁଝି ଗଲେ ଏବଂ ନିଜେ ତାଙ୍କୁ ପାଛୋଟି ଆଣିବେ ବୋଲି ଆଗେଇ ଗଲେ । ତାଙ୍କୁ ଦେଖିବା ମାତ୍ରେ ଆଲିଙ୍ଗନ କରି କୁଶଳ ପ୍ରଶ୍ନ ପଚାରିଲେ । ତାପରେ ତାଙ୍କୁ ସଙ୍ଗରେ ନେଇ ନିଜ ସିଂହାସନ ଉପରେ ବସାଇଲେ ଏବଂ ପାଟରାଣୀଙ୍କୁ କହିଲେ-ମୋର ପରମ ବନ୍ଧୁ ଆଜି ଆମର ଅତିଥି ହୋଇଛନ୍ତି । ତୁମେ ତାଙ୍କୁ ଯଥାରୀତି ସମ୍ମାନ ଜଣାଅ ।

ଏହା ଶୁଣି ସ୍ୱୟଂ ରାଣୀ ତାଙ୍କୁ ସମ୍ମାନ ପ୍ରଦର୍ଶନ କଲେ । ରାଜା ସୁବର୍ଣ୍ଣ କଳସୀରେ ପାଣି ଢାଳିଲାବେଳେ, ରାଣୀ ନିଜ

ହସ୍ତରେ ଅତିଥିଙ୍କ ପାଦ ପ୍ରକ୍ଷାଳନ କଲେ । ସୁଗନ୍ଧ ତୈଳରେ ଅତିଥିଙ୍କର ଶରୀର ମର୍ଦ୍ଦନ ହେଲା । ରାଜା ତାଙ୍କ ଗଣ୍ଠିଲି ଦେଖି ବୁଝିଲେ, ସେ ନିଶ୍ଚୟ ତାଙ୍କ ପାଇଁ କିଛି ଉପହାର ଆଣିଛନ୍ତି । ତେଣୁ ସେ ନିଜ ପକ୍ଷରୁ ପ୍ରଥମେ ପ୍ରଶ୍ନକଲେ, ବନ୍ଧୁ ! ମୋ' ପାଇଁ କଣ ଆଣିଛ ?

ଗ୍ରାମବାସୀ ସଙ୍ଗେ ସଙ୍ଗେ ଗଣ୍ଠିଲି ଖୋଲି ତାଙ୍କ ହାତକୁ ମାଲପୁଆଟିଏ ବଢାଇ ଦେଲେ । ରାଜା ମହା ଆନନ୍ଦରେ ତହିଁରୁ କିଛି କିଛି ମନ୍ତ୍ରୀ ଓ ରାଣୀମାନଙ୍କ ହାତକୁ ବଢାଇ ଦେଲେ ଓ କହିଲେ, ଏହା ମୋ' ବନ୍ଧୁଙ୍କର ଘର ତିଆରି ଜିନିଷ । ତୁମକୁ ଖାଇବାକୁ ପଡିବ ।

ରାଜା ନିଜେ ମଧ୍ୟ ଆଗ୍ରହସହକାରେ ତାକୁ ଖାଇବାକୁ ଲାଗିଲେ ।

ପ୍ରତ୍ୟନ୍ତର ସେହି ଗ୍ରାମବାସୀ ଜଣକ ରାଜାଙ୍କୁ ଉପହାର ଦେବା ଅଭିଳାଷେ ସଙ୍ଗରେ କିଛି ବସ୍ତ୍ର ବି ନେଇ ଆସିଥିଲେ । ରାଜା ନିଜ ଦେହରୁ ରାଜପୋଷାକ ଓହ୍ଲାଇ ପକାଇ, ସେହି ଉପହାର ବସ୍ତ୍ର ପରିଧାନ କଲେ । ରାଜାଙ୍କର ପାଟରାଣୀ ମଧ୍ୟ ସେହି ଉପହାର ବସ୍ତ୍ର ପିନ୍ଧିଲେ ।

ଏହାପରେ ରାଜା ତାଙ୍କର ଭୋଜନ ଚର୍ଚ୍ଚା କଲେ । ଭୋଜନ ପରେ ନାପିତକୁ ଡାକି କହିଲେ—ମୋର ଯେମିତି କେଶ ପ୍ରସାଧନ କର, ମୋର ଏହି ବନ୍ଧୁଙ୍କର ମଧ୍ୟ ସେହିପରି ପ୍ରସାଧନ କରିବ । ସୁଗନ୍ଧ ତେଲ ମର୍ଦ୍ଦନ କରି ସ୍ନାନ କରାଇବ । ନାପିତ ରାଜାଙ୍କ ଆଦେଶ ପାଳନ କଲା । ସ୍ନାନ ପରେ ତାଙ୍କୁ ବାରାଣସୀ ରାଜ୍ୟରେ ପ୍ରସ୍ତୁତ ହେଉଥିବା ଖୁବ୍ ସୁନ୍ଦର ବସ୍ତ୍ର ପରିଧାନ କରିବାକୁ ଦିଆଗଲା ଓ ନାନା ପ୍ରକାର ଅଳଙ୍କାରରେ ତାଙ୍କୁ ଭୂଷିତ କରାଗଲା । ରାଜା ସମସ୍ତ ମନ୍ତ୍ରୀ ଓ ରାଜକର୍ମଚାରୀଙ୍କୁ ଡକାଇ, ସେମାନଙ୍କ ସମ୍ମୁଖରେ ଏହି ଗ୍ରାମବାସୀଙ୍କୁ ଅର୍ଦ୍ଧେକ ରାଜ୍ୟ ଦେବାର ଘୋଷଣା କଲେ । ଏହାପରେ ରାଜାଙ୍କ ଇଚ୍ଛା ଅନୁସାରେ ସମସ୍ତ ବ୍ୟବସ୍ଥା କରାଗଲା ।

ରାଜାଙ୍କ ଏପରି ବ୍ୟବସ୍ଥା ରାଜ୍ୟର ମନ୍ତ୍ରୀମାନଙ୍କୁ ଖରାପ ଲାଗିଲା । ସେମାନେ ପରସ୍ପର ମଧ୍ୟରେ କୁହାକୁହି ହେଲେ, ଏ ଲୋକ କେଉଁଠୁ ଆସି ଜୁଟିଲା ଠିକଣା ନାହିଁ, ରାଜା ତାରି ସେବାପାଇଁ କେତେ ବଡ଼ ତ୍ୟାଗ କଲେ ନାହିଁ । ରାଜାଙ୍କର ପାଟରାଣୀ ମଧ୍ୟ ଏଇ ଅଚିହ୍ନା ଲୋକର ସେବା ପାଇଁ ସର୍ବଦା ତତ୍ପର । ଏଭଳି କାର୍ଯ୍ୟକୁ ପ୍ରଶ୍ରୟ ଦେବା ଉଚିତ ନୁହେଁ ।

ମନ୍ତ୍ରୀମାନେ ରାଜ୍ୟର ରାଜକୁମାରଙ୍କୁ ଯାଇ କହିଲେ, ରାଜକୁମାର ! ଏକି ଅନ୍ଧ'ବୁଝାମଣା ଦେଖିଲେ । କେଜାଣି, କେଉଁଠୁ

ଗୋଟିଏ ଅଜଣା ଲୋକ ଆସି କେତେ ବଡ ଫାଇଦା ଉଠାଉ ନାହିଁ ! ରାଜା ଏପରି ଏକ ଅଚିହ୍ନା ବ୍ୟକ୍ତିକୁ ନିଜ ରାଜ୍ୟରୁ ଅଧା ଦାନ ବି କରିଦେଲେ । ଏସବୁ ଘଟଣା ଦେଖି ଆମକୁ ଲାଜ ମାଡୁଛି । ଏ ସବୁ କଥା ଭଲ ନୁହେଁ । ଆମକୁ ବି ଏହା ଭଲ ଲାଗୁନାହିଁ । ଲୋକେ ଏଇ କଥା ନେଇ ଅଟା ପରିହାସ ଆରମ୍ଭ କରିଦେଲେଣି, ସେ ସବୁ ଶୁଣି ଆମ ମୁଣ୍ଡ ତଳକୁ ନଇଁ ଯାଉଛି ।

କିନ୍ତୁ ଏ ସବୁ କଥାରେ ମୋର ବା କଣ କରିବାର ଅଛି ? ରାଜକୁମାର ପ୍ରଶ୍ନ କଲେ ।

ମନ୍ତ୍ରୀମାନେ କହିଲେ—ଆପଣ ଯାଇ ରାଜାଙ୍କ ଆଗରେ ଜଣାଇ ଦିଅନ୍ତୁ ଯେ, ଜନସାଧାରଣ ଏ ସବୁ ଘଟଣା ଦେଖି ଦୁଃଖ ପ୍ରକାଶ କରୁଛନ୍ତି । ତେଣୁ ସେ ଏପରି କାର୍ଯ୍ୟ କରନ୍ତୁ ନାହିଁ । ଯଦି ସେ ଏକଥା ମାନନ୍ତି, ଭଲ ହେବ । ନ ହେଲେ ଅନ୍ୟ ବ୍ୟବସ୍ଥା କରାଯିବ ।

କୁମାର ସେମାନଙ୍କ ସବୁକଥା ରାଜାଙ୍କ ଆଗରେ ଜଣାଇବେ ବୋଲି ସମ୍ମତି ପ୍ରଦାନ କଲେ ।

ରାଜକୁମାର ରାଜାଙ୍କ ଆଗରେ ପ୍ରକାଶ କଲେ—ମହାରାଜ ! ଆପଣ ଯେଉଁ କାର୍ଯ୍ୟସବୁ କରୁ ଅଛନ୍ତି, ସେଥିରେ ଆମର ରାଜକର୍ମଚାରୀମାନେ ଅସନ୍ତୋଷ ପ୍ରକାଶ କରୁଅଛନ୍ତି ।

ଏହା ଶୁଣି ମହାରାଜା ରାଜକୁମାରଙ୍କ ଆଗରେ ସବୁ କଥା ପ୍ରକାଶ କଲେ । ସେ କହିଲେ—ପ୍ରତ୍ୟନ୍ତରେ ବିଦ୍ରୋହ ଲାଗିଲା ବେଳେ ମୁଁ ସେହି ବିଦ୍ରୋହ ଦମନ କରିବାକୁ ଯାଇ, ବିଦ୍ରୋହୀମାନଙ୍କ ହାତରେ ପରାସ୍ତ ହେଲି । ଉପାୟହୀନ ହୋଇ ମୁଁ ସେଠାରୁ ପଳାୟନ କଲି । ମୋର ଚତୁର୍ପାର୍ଶ୍ୱରେ ଶତ୍ରୁ ସେନା ଘେରି ରହିଥାନ୍ତି । ଠିକ୍ ଏହିପରି ବିପଦବେଳେ, ଗ୍ରାମବାସୀ ଜଣକ ମୋତେ ଆଶ୍ରୟ ପ୍ରଦାନ କରିଥିଲେ । ସେ ମୋତେ ଆଶ୍ରୟ ଦେଇ ନ ଥିଲେ ମୁଁ ଶତ୍ରୁ କବଳରେ ପଡି ପ୍ରାଣ ହରାଇଥାନ୍ତି । କେବଳ ତାଙ୍କରି ଦୟାରୁ ମୁଁ ଏବେ ଜୀବିତ ଅଛି । ଯେଉଁ ଲୋକ ମୋର ଏତେ ବଡ ଉପକାର କଲେ, ତାଙ୍କୁ ଆଦର ସମ୍ମାନ ଦେଖାଇ ଘରେ ରଖିବା ଓ ରାଜ୍ୟରୁ ଅଧେ ଦେବାରେ ବଡ କଥା କଣ ହେଲା ?

ରାଜକୁମାରଙ୍କ ମନକୁ ଏକଥା ପାଇଲା । ସେ ମନ୍ତ୍ରୀମାନଙ୍କ ଆଗରେ ସବୁକଥା ବୁଝାଇ କହିଲେ । ସବୁକଥା ପ୍ରକାଶ ପାଇଯିବା ପରେ ସମସ୍ତେ ଏକମତ ହେଲେ ଯେ, ଗ୍ରାମବାସୀଙ୍କୁ ଏତେ ବଡ ସମ୍ମାନ ପ୍ରଦର୍ଶନ କରିବା ଅନୁଚିତ ହୋଇନାହିଁ । ତେଣିକି ରାଜାଙ୍କ ବ୍ୟବହାରରେ ସମସ୍ତେ ଆନନ୍ଦ ପ୍ରକାଶ କଲେ ।

●